# କୋରାପୁଟର ଗାନ୍ଧି

# ରାଧାକୃଷ୍ଣ ବିଶ୍ୱାସରାୟ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର
ଓଡ଼ିଶା, ଭୁବନେଶ୍ୱର

କୋରାପୁଟ ଗାନ୍ଧି

# ରାଧାକୃଷ୍ଣ ବିଶ୍ୱାସରାୟ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା

ଭୁବନେଶ୍ୱର

# କୋରାପୁଟ ଗାନ୍ଧି ରାଧାକୃଷ୍ଣ ବିଶ୍ୱାସରାୟ


ଲେଖକ ଶ୍ରୀ ସୁବାସ ଚନ୍ଦ୍ର ମିଶ୍ର
ପ୍ରଥମ ପ୍ରକାଶ ୧୯୯୯
ନୂତନ ମୁଦ୍ରଣ ୨୦୦୧

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଜନଶିକ୍ଷା ଭବନ, ୟୁନିଟ-୫,
ଭୁବନେଶ୍ୱର - ୭୫୧୦୦୧
ପ୍ରକାଶନ ସଂଖ୍ୟା : ଏସ୍. ଆର୍. ସି -୨୮୧-୧/୯୯-୨୦୦୦
ମୁଦ୍ରଣ ସଂଖ୍ୟା ୨୦୦୦
ମୁଦ୍ରଣ ଭୋଲାନାଥ ପ୍ରେସ୍, ବମିଖାଲ, ଭୁବନେଶ୍ୱର - ୧୦
ଭୁବନେଶ୍ୱର-୭୫୧୦୧୬
ମୂଲ୍ୟ ଚାରି ଟଙ୍କା ମାତ୍ର


## KORAPUT GANDHI RADHAKRUSHNA BISWASRAY


Written by Shri Subash Chandra Mishra
1st Edition 1999

New Edition 2001

State Resource Centre for Adult Education, Orissa
Janasiksha Bhavan, Unit-V,
Bhubaneswar - 751001
Publication No. : S.R.C.- 281-1/99-2000
No. of Copies
Printed 2000
Printed at Bholanath Press
Bomikhal, Bhubaneswar - 10
Price Rupees Four Only.

ଆଜି ଯେଉଁ କୋରାପୁଟ ଜିଲ୍ଲା ଆମେ ଦେଖୁଛେ, ଶହେ ବର୍ଷ ତଳେ ତାହା ଏମିତି ନଥିଲା । ସେତେବେଳେ ଏହାକୁ ଜୟପୁର ରାଇଜ ବୋଲି କୁହା ଯାଉଥିଲା । ୧୯୦୦ ମସିହା ବେଳକୁ ଏହି ରାଇଜର ରାଜା ଥିଲେ ବିକ୍ରମଦେବ ବର୍ମା । ବଣଜଙ୍ଗଲରେ ପରିପୂର୍ଣ୍ଣ ଏହି ରାଇଜରେ ବାଘ ଭାଲୁ ପଣ ପଣ । ଚାରିଆଡ଼ ନଈ ନାଳ ପାହାଡ଼ ପର୍ବତରେ ଭରା । ବର୍ଷକୁ ଛ ମାସ ବର୍ଷା । ବଣ ଭିତରେ ନାନା ପ୍ରକାର ଆଦିବାସୀ ଗୋଷ୍ଠୀର ଲୋକ । ବଣ୍ଡା, କୋୟା, ଡିଡାୟୀ, ଗୋଣ୍ଡ, କନ୍ଧ ଏମିତି କେତେ କ'ଣ । ଏମାନଙ୍କୁ ଶାସନ କରୁଥିଲେ ରଜାଘରର ନାୟକ, ଗଣ୍ଡା ଓ ଚଲାଣ । ଗୋରା ସରକାରଙ୍କ ତରଫରୁ ଥିଲେ ପୁଲିସ୍, ଜଙ୍ଗଲ ଗାର୍ଡ଼ ଓ ରେଭେନ୍ୟୁ ବାଲା । ଏହି ସରକାରୀ ଲୋକମାନେ ଆଦିବାସୀଙ୍କ ଉପରେ ନାହିଁ ନଥିବା ଅତ୍ୟାଚାର କରୁଥିଲେ ।

ସାଧାରଣ ଲୋକେ ବାବୁମାନଙ୍କ ଘର ଛପର କରୁଥିଲେ । ବଣରୁ କାଠ କାଟି ଆଣି ଚିରୁଥିଲେ । ଏପରିକି ବାବୁମାନଙ୍କୁ ଦୋଳାରେ ବୋହି ନେଉଥିଲେ । ରୟତ ବା ପ୍ରଜାମାନେ ଗଡ଼ମ ଓ ଜିନିଷ ଯୋଗାଣ ଟିକସ ଆଦି ଦେଇ ସର୍ବସ୍ୱାନ୍ତ ହୋଇଯାଉଥିଲେ । 'ଆହା'ବୋଲି କହିବାକୁ ଏମାନଙ୍କର କେହି ନଥିଲେ । କେହି ବି ସାହା ଭରସା

ନଥିଲେ । ବଣ ମୁଲକର ମଣିଷମାନେ ଶାସନ କରୁଥିବା ଧୋବଧାଉଳିଆ ବାବୁମାନଙ୍କୁ ଡରି ଡରି ମରୁଥିଲେ । ଦେଖିଲା ମାତ୍ରେ ବଣରେ ଲୁଚୁଥିଲେ । ଏମାନଙ୍କୁ ବେଠି ଖଟାଇ ବାବୁମାନେ କାମ କରାଇ ନେଉଥିଲେ । ଲୋକଙ୍କ ଜମିରେ ଧାନ କି ବାଡ଼ିରେ ପରିବା ରହୁନଥିଲା । ସବୁ ଲୁଟି ନେଉଥିଲେ ଏହି ବାବୁମାନେ । ପୋଷା ଛେଳି-ମେଣ୍ଢା ବି ବାଦ ପଡୁନଥିଲେ । ବେଠି, ଭେଟି, ଗୋତି ଓ ଖଟଣି ସତେ ଯେମିତି ଲୋକଙ୍କ ଭାଗ୍ୟରେ ଲେଖା ଥିଲା । ଲୁହ ନ କାନ୍ଦି ରକତ କାନ୍ଦୁଥିଲେ ଏଇ ରାଇଜର, ଏଇ ମାଟିର ମଣିଷମାନେ ।

ଏତିକିବେଳେ ଡରି ଡରି ମରୁଥିବା ଲୋକମାନଙ୍କୁ ସାହସ ଦେବାକୁ ଆଗେଇ ଆସିଲେ ଜଣେ । ଖାଲି ସେତିକି ନୁହେଁ । ସେ ଜମିଦାର ଓ ସରକାରଙ୍କ ବିରୋଧରେ ଲୋକଙ୍କୁ ଏକାଠି କରାଇଲେ । ଅହିଂସା ବାଟରେ ଚାଲି ଅନ୍ୟାୟର ମୁକାବିଲା କରିବାପାଇଁ ବଳ ଦେଲେ ସେମାନଙ୍କ ମନରେ । ଏହିଭଳି ସାରା ଜୀବନ ଯିଏ ଲୋକଙ୍କ ପାଇଁ କାମ କରିଥିଲେ, ସେ ହେଉଛନ୍ତି ରାଧାକୃଷ୍ଣ ବିଶ୍ୱାସରାୟ । ସେ ଥିଲେ ଯେତିକି ତ୍ୟାଗୀ, ସେତିକି ଦେଶ ପ୍ରେମୀ । ପୁଣି ପିଲାପରି ସରଳ ଓ ନିରୀହ । ହେଲେ ଅନ୍ୟାୟ ଦେଖିଲେ ଲୁହା ପରିଟାଣ ହୋଇ ଯାଉଥିଲେ । ଗାନ୍ଧିଜୀଙ୍କ ପରି ଏକାଦଶ ବ୍ରତ ମାନି ଚଳୁଥିବାରୁ ଲୋକେ ତାଙ୍କୁ ଶରଧାରେ କୋରାପୁଟର ଗାନ୍ଧି ବୋଲି ଡାକୁଥିଲେ ।

## ରାଧାକୃଷ୍ଣଙ୍କ ପିଲାଦିନ

ରାଧାକୃଷ୍ଣ ବିଶ୍ୱାସରାୟ ୧୯୦୫ ମସିହା ଏପ୍ରିଲ ତିନି ତାରିଖରେ ପାର୍ବତୀପୁରର ବ୍ରାହ୍ମଣ ସାହିରେ ଜନ୍ମ ହୋଇଥିଲେ । ଏହି ସ୍ଥାନ ଏବେ

ଆନ୍ଧ୍ର ପ୍ରଦେଶରେ ଅଛି । ତାଙ୍କ ବାପାଙ୍କ ନାଆଁ ଥିଲା ବିଶ୍ୱମ୍ଭର ସାହୁ ଓ ମାଆଙ୍କ ନାଆଁ ରମ୍ଭା । ବାପାଙ୍କର ବ୍ରାହ୍ମଣ ବୃତ୍ତି । କବିରାଜି ବି ଜାଣିଥିଲେ । ଭାରି ସ୍ନେହୀ ଓ ସଚ୍ଚୋଟ ଲୋକ । ମା ଭାରି ଧର୍ମପ୍ରାଣ ଥିଲେ । ରାଧାକୃଷ୍ଣଙ୍କ ବଡ଼ଭାଇ ଆପୁଟୁ ସାହୁ ଓ ମଝିଆ ଭାଇ ନରସିଂହ ସାହୁ । ନରସିଂହ ସାହୁ ଭାରି ସ୍ୱାଭିମାନୀ । ଏମାନେ ୧୯୧୫ ସାଲରେ ପାର୍ବତୀ ପୁର ଛାଡ଼ି ଜୟପୁର ଚାଲି ଆସିଲେ । ସେହିଦିନଠାରୁ ଜୟପୁର ଭୋଇ ସାହିରେ ରହିଲେ ।

ଭୋଇସାହିର ଦାମୋଦର ବିଶ୍ୱାସରାୟ ଥିଲେ ବିଶ୍ୱମ୍ଭର ସାହୁଙ୍କ ସଢୁ । ତାଙ୍କ ସ୍ତ୍ରୀଙ୍କ ନାଆଁ ବିଷ୍ଣୁପ୍ରିୟା । ରମ୍ଭା ଓ ବିଷ୍ଣୁପ୍ରିୟା ଦୁଇ ଭଉଣୀ । ଦାମୋଦର ବିଶ୍ୱାସରାୟ ଅପୁତ୍ରକ ଥିଲେ । ବଂଶରକ୍ଷା ପାଇଁ ସେ ବିଶ୍ୱମ୍ଭର ସାହୁଙ୍କ ସାନପୁଅ ରାଧାକୃଷ୍ଣଙ୍କୁ ପୋଷ୍ୟପୁତ୍ର ଭାବେ ଗ୍ରହଣ କଲେ । ସେହିଦିନ ଠାରୁ ପିଲାଟିର ପରିଚୟ  ହେଲା ରାଧାକୃଷ୍ଣ ବିଶ୍ୱାସରାୟ ।

ରାଧାକୃଷ୍ଣ ପ୍ରଥମେ ପାର୍ବତୀପୁର ସ୍କୁଲରେ ପାଠ ପଢୁଥିଲେ । ତା'ପରେ ଜୟପୁରରେ ରାଜା ବସାଇଥିବା ହାଇସ୍କୁଲରେ ପାଠ ପଢ଼ିଲେ । ୧୯୨୧ ରେ ସେ ମାଟ୍ରିକ ପାସ୍‌କଲେ । ପଇସାପତ୍ର ଅଭାବ ଯୋଗୁଁ ସେ ବିଶାଖାପାଟଣା କି ପାରଳାଖେମୁଣ୍ଡି ଯାଇ ପାଠ ପଢ଼ି ପାରିଲେ ନାହିଁ । ୧୬ ବର୍ଷ ବୟସରେ ମାଟ୍ରିକ ପାଶ କରି କୋରାପୁଟ କଲେକଟରଙ୍କ ଅଫିସରେ ମାସକୁ ବାର ଟଙ୍କା ଦରମାରେ ମୁଖ୍ୟ କିରାଣୀ ହେଲେ । ଭିନ୍ନ ଭିନ୍ନ ଭାଷା ଶିଖିବା ପାଇଁ ତାଙ୍କର ଭାରି

ଆଗ୍ରହ ଥିଲା । ସେ ଓଡ଼ିଆ, ତେଲୁଗୁ, ଇଂରେଜୀ, ହିନ୍ଦୀ ଓ ଉର୍ଦ୍ଦୁ କହି ପାରୁଥିଲେ । ଏହି ସବୁ ଭାଷାରେ ବି ଲେଖି ପାରୁଥିଲେ । ଖବର କାଗଜ ପଢ଼ି ସେ ଗାନ୍ଧି ଓ କଂଗ୍ରେସ ବିଷୟରେ ସବୁ ଜାଣିଲେ । ତାଙ୍କ ମନରେ ଦେଶ ସେବା କରିବାର ଆଗ୍ରହ ଦେଖାଦେଲା ।

## ଓଡ଼ିଶା ବୋଲି ଅଲଗା ରାଇଜଟିଏ ନଥିଲା

ରାଧାକୃଷ୍ଣ ବିଶ୍ୱାସ ରାୟଙ୍କ ପିଲାବେଳର କଥା । ସେତେବେଳକୁ ଓଡ଼ିଶା ବୋଲି ଅଲଗା ରାଇଜଟିଏ ନଥିଲା । ଓଡ଼ିଶା କହିଲେ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାକୁ ବୁଝାଉଥିଲା । ଏହ ଅଂଶ ପୁଣି ଆଗେ ମିଶିରହିଥିଲା ବଙ୍ଗ ପ୍ରଦେଶ ସହିତ । ପରେ ଏହାମିଶିଲା ବିହାର ସଙ୍ଗେ । ସମ୍ବଲପୁର ଜିଲ୍ଲା ଥିଲା ମଧ ପ୍ରଦେଶରେ । ଗଞ୍ଜାମ ଓ ଆଜିର କୋରାପୁଟ ଜିଲ୍ଲା ମାନ୍ଦ୍ରାଜ ଅଧୀନରେ ରହିଥିଲା । ଏ ଦୁଇ ଜିଲ୍ଲା ମାଇ ଅଞ୍ଚଳ । ଏସବୁ ଅଞ୍ଚଳକୁ ମିଶାଇ ଓଡ଼ିଶା ପ୍ରଦେଶ ଗଠନ ପାଇଁ ଦାବି ହେଉଥାଏ । ସେତେବେଳେ ବଡ଼ ନେତା କହିଲେ ମଧୁ ସୂଦନ ଦାସ ଓ ଗୋପବନ୍ଧୁ ଦାସ ।

ରାଧାକୃଷ୍ଣ ବିଶ୍ୱାସରାୟଙ୍କ ପିଲାଦିନର କଥା । ଜୟପୁରର କେତେଜଣ ଜଣାଶୁଣା ଲୋକ ଓଡ଼ିଆ ସମାଜ ବୋଲି ଗୋଟିଏ ସଂଘ ଗଢିଥିଲେ । ସଂଘର ନିଷ୍ପତ୍ତି ଅନୁସାରେ ରାଧାକୃଷ୍ଣ ବିଶ୍ୱାସରାୟ ନିଜ ସାଙ୍ଗମାନଙ୍କ ସହିତ ଜୟପୁରରେ ଘର ଘର ବୁଲି ମାଟିପାତ୍ର ବାଣ୍ଟୁଥିଲେ । ସାତଦିନ ପରେ ମୁଠିଭିକ ମାଗି ସେହି ଚାଉଳକୁ ସାହି ମଝିରେ ଗଦା କରି ଦେଉଥିଲେ । ଘର ଘର ବୁଲି ପଇସା କଉଡ଼ି ଆଦାୟ କରି

ଏହାକୁ ଦେଶ କାମରେ ଲଗାଇଥିଲେ । ପିଲାବେଳୁ ସେ ଏହିଭଳି ଦେଶ କାମରେ ମନ ଦେଇଥିଲେ ।



ସେତେବେଳକୁ ଖବର କାଗଜରେ ଗାନ୍ଧିଙ୍କ ବିଷୟରେ ଲେଖାମାନ ବାହାରୁ ଥାଏ । ୧୯୨୧ ବେଳକୁ ମାନ୍ଦ୍ରାଜରୁ ବାହାରୁଥିବା 'ହିନ୍ଦୁ' ଇଂରାଜୀ ଖବର କାଗଜ ଜୟପୁରକୁ ଆସୁଥାଏ । ଓଡ଼ିଆ କାଗଜ କିଛି ଆସୁ ନଥିଲା । ଦେଶ ପାଇଁ କଂଗ୍ରେସ କାମ କରୁଛି ଜାଣି ରାଧାକୃଷ୍ଣ ବିଶ୍ୱାସରାୟ ୧୯୨୫ରେ କଂଗ୍ରେସରେ ମିଶିଲେ । ସେ ଚାରିଅଣିଆ ସଭ୍ୟହେଲେ । ଗାନ୍ଧି ବତାଇଥିବା ବାଟରେ ଚାଲିବା ପାଇଁ ସେ ମନ ବଳାଇଲେ । ସୂତା କାଟିଲେ । ଖଦଡ଼ ଖଦି ପିନ୍ଧିଲେ । କଂଗ୍ରେସ ଆଉ ଗାନ୍ଧିଙ୍କ କଥା କୋରାପୁଟ ବଣ ମୁଲକରେ ପ୍ରଚାର କଲେ । ତାଙ୍କ

ସହିତ ମିଶିଲେ ବହୁତ ଲୋକ । ସେ କୋରାପୁଟ ଜିଲ୍ଲାର ଜଣେ ବଡ଼ ନେତା ବୋଲାଇଲେ ।

## ଲୁଣ ଆଇନ ମାନିବା ନାହିଁ

ଗୋରା ସରକାର ଆଇନ କରିଦେଲେ ଯେ, ଭାରତର ଲୋକେ ଲୁଣ ତିଆରି କରି ପାରିବେ ନାହିଁ । କଲେ ଦଣ୍ଡ ମିଳିବ । ଜୋରିମାନା ଦେବାକୁ ପଡ଼ିବ । ଆମ ଦେଶ ଲୋକେ ଲୁଣ ଆଇନ ଯୋଗୁଁ ଭାରି କଷ୍ଟ ଭୋଗିଲେ । ଗାନ୍ଧିଜୀ ଡାକରା ଦେଲେ, ''ଲୁଣ ଆଇନ ମାନ ନାହିଁ । ସାହସର ସହିତ ଲୁଣ ତିଆରି କର । ଅହିଂସା ନୀତିରେ ରହ । ଲୁଣ ମାରି ଜେଲ୍ ଯାଅ ପଛେ ଡର ନାହିଁ ।'' ସାରା ଦେଶରେ ଏକଥା ପ୍ରଚାର ହୋଇଗଲା ।

ଦିନେ ଆମ ଓଡ଼ିଶାରେ ଲୁଣ ତିଆରି କରିବା ଗୋଟିଏ ବଡ଼ ବେଉସା ଥିଲା । ଇଂରେଜ ସରକାରଙ୍କ ଲୁଣ ଆଇନ ଯୋଗୁଁ ବହୁ ଲୋକ କାମ ଧନ୍ଦା ହରାଇଲେ । ଓଡ଼ିଶାରେ ଲୁଣ ଆଇନ ନ ମାନି ଆନ୍ଦୋଳନ କରିବାକୁ ଗାନ୍ଧି କହି ପଠାଇଲେ । ସେତେବେଳେ ଓଡ଼ିଶାର ଗୋପବନ୍ଧୁ ଚୌଧୁରୀ ଏହି ଆନ୍ଦୋଳନ କରିବା ପାଇଁ ବାହାରିଲେ । ତାଙ୍କ ସ୍ତ୍ରୀ ରମାଦେବୀ ମଧ୍ୟ ଆଗେଇ ଆସିଲେ ।

ଖବର କାଗଜରୁ ଏ ବିଷୟ ରାଧାକୃଷ୍ଣ ବିଶ୍ୱାସରାୟ ପଢ଼ିଲେ । ସେ ଲୁଣ ଆଇନ ଅମାନ୍ୟ କରିବା ଆନ୍ଦୋଳନରେ ମିଶିବା ପାଇଁ ଗୋପବନ୍ଧୁଙ୍କୁ ଚିଠି ଲେଖିଲେ । ଏହା ୧୯୨୯ ସାଲର କଥା । ଗୋପବାବୁ ଚିଠିର ଉତ୍ତର ପଠାଇଲେ ।

ଏହି ଲୁଣମରା ଆନ୍ଦୋଳନରୁ ସ୍ୱାଧୀନତା ଆନ୍ଦୋଳନର ଆରମ୍ଭ ।

## ଗୋପବାବୁଙ୍କ ଚିଠି

ଗୋପବନ୍ଧୁ ଚୌଧୁରୀ ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ତାଙ୍କ ଚାକିରି ଛାଡ଼ି ଦେବାକୁ ପରାମର୍ଶ ଦେଲେ । ସେ ଲେଖିଥିଲେ, "ତୁମ ଚାକିରି ସମର୍ପଣ କରି ଦେଇ ଚାଲି ଆସ । ତମ କୋରାପୁଟ ଓ ଗଞ୍ଜାମ ଅଞ୍ଚଳ ସକାଶେ ଶ୍ରୀ ନିରଞ୍ଜନ ପଟ୍ଟନାୟକ ବ୍ରହ୍ମପୁର ଠାରେ ଏକ ସତ୍ୟାଗ୍ରହ ଶିବିର ଖୋଲିଛନ୍ତି, ସେଥିରେ ଯୋଗଦିଅ ।"

ଗୋପବାବୁଙ୍କ ଚିଠି ପଢ଼ି ରାଧାକୃଷ୍ଣ ବିଶ୍ୱାସରାୟ ଚାକିରି ଛାଡ଼ିଦେଲେ । ସେ ନବରଙ୍ଗପୁର ତାଲୁକା ଅଫିସରେ କିରାଣୀ ଥିଲେ । ଦେଶକାମ ପାଇଁ ସବୁ ସୁଖ ସୁବିଧା ତ୍ୟାଗ କଲେ । ସେତେବେଳକୁ ବ୍ରହ୍ମପୁରର ଦିବାକର ପଟ୍ଟନାୟକ କୋରାପୁଟ ଚା କମ୍ପାନୀ ଅଫିସରେ କାମ କରୁଥିଲେ । ସେ ବି କାମ ଛାଡ଼ି ଦେଇ ଲୁଣ ଆଇନ ଅମାନ୍ୟ କରିବା ପାଇଁ ରାଧାକୃଷ୍ଣଙ୍କ ସହିତ ମିଶିଲେ ।

୧୯୩୦ ମସିହାର କଥା । ରାଧାକୃଷ୍ଣ ଗୋପବାବୁଙ୍କ କଥା ମାନିଲେ ବଡ଼ଭାଇ ନରସିଂହ ସାହୁ, ଜୟପୁରର ଲୋକନାଥ ଭୋଇ, ନରସିଂହ ପଣ୍ଡା, ସୁବା ନାଇଡୁ ଶାସ୍ତ୍ରୀ ଓ ଦିବାକର ପଟ୍ଟନାୟକଙ୍କ ସହ ମିଶି ସେ ସତ୍ୟାଗ୍ରହ କରିବା ପାଇଁ ବ୍ରହ୍ମପୁର ଗଲେ । ସେଠି ନିରଞ୍ଜନ ପଟ୍ଟନାୟକ ଖୋଲିଥିଲେ "ଉଦ୍ୟୋଗ ମନ୍ଦିର" ନାମକ ଅନୁଷ୍ଠାନଟିଏ । ଲବଣ ସତ୍ୟାଗ୍ରହ କରିବା ପାଇଁ ଅନ୍ୟମାନଙ୍କ ସହ ମିଶି ରାଧାକୃଷ୍ଣ ସେଠାରେ ତାଲିମ ପାଇଲେ । ମାର୍ଚ୍ଚ ମାସ ୧୫ ତାରିଖ ଦିନ ଗଞ୍ଜାମ

ଜିଲ୍ଲା ହୁମ୍ମାଠାରେ ଲବଣ ସତ୍ୟାଗ୍ରହ ହେଲା । ସତ୍ୟାଗ୍ରହ ଆରମ୍ଭ ହେବା ମାତ୍ରେ ପୋଲିସ୍ ସତ୍ୟାଗ୍ରହୀମାନଙ୍କୁ ବନ୍ଦୀ କରି ବ୍ରହ୍ମପୁର ଜେଲ୍‌କୁ ନେଲେ । ବିଚାର କରାଯାଇ ରାଧାକୃଷ୍ଣ ବିଶ୍ୱାସରାୟ ଓ ଅନ୍ୟମାନଙ୍କୁ ତିନିବର୍ଷ ଲେଖାଏ ଜେଲ୍ ଦଣ୍ଡ ଦିଆଗଲା ।

ବ୍ରହ୍ମପୁର ଜେଲ୍‌ରୁ ରାଧାକୃଷ୍ଣ ବିଶ୍ୱାସରାୟ, ଦିବାକର ପଟ୍ଟନାୟକ, ନରସିଂହ ସାହୁ, ନରସିଂହ ପଣ୍ଡା ଓ ଲୋକନାଥ ଭୋଇଙ୍କୁ ବିଶାଖାପାଟଣା ଜେଲକୁ ନିଆଗଲା । ସେଠି ଚାରି ପାଞ୍ଚ ମାସ ରଖିଲା ପରେ ସେମାନଙ୍କୁ ରାଜମହେନ୍ଦ୍ରୀ ଜେଲ୍‌କୁ ନେଲେ । ଏବେ ରାଜମହେନ୍ଦ୍ରୀ ଆନ୍ଧ୍ରପ୍ରଦେଶରେ ରହିଛି । ସେଠି ଦେଶର ରାଜନୈତିକ ବନ୍ଦୀମାନଙ୍କୁ ରଖା ଯାଉଥିଲା । ୧୯୩୧ ରେ ସେମାନେ ଜେଲରୁ ମୁକୁଳିଲେ । ଗାନ୍ଧି ଓ ବଡ଼ଲାଟ ଇରଉଇନ୍‌ଙ୍କ ମଧ୍ୟରେ ହୋଇଥିବା ଚୁକ୍ତି ଅନୁସାରେ ଏମାନଙ୍କୁ ଜେଲ୍‌ରୁ ଛାଡ଼ କରାଗଲା ।

## କୋରାପୁଟ ଜିଲ୍ଲାରେ କଂଗ୍ରେସ କାମ

ରାଧାକୃଷ୍ଣ ବିଶ୍ୱାସରାୟ ରାଜମହେନ୍ଦ୍ରୀ ଜେଲ୍‌ରୁ ଫେରି ଜୟପୁର ଆସିଲେ । ସେହି ସମୟରେ ଜୟପୁର ସୁନାରି ସାହିରେ ନବରଙ୍ଗପୁରର ସଦାଶିବ ତ୍ରିପାଠୀ ଥାଆନ୍ତି । ଜୟପୁରର ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀଙ୍କ ସହିତ ମିଶି ଖାଲି ପାଦରେ ରାଧାକୃଷ୍ଣ ସାରା ଜିଲ୍ଲା ବୁଲିଲେ । ଗାଁରେ ଗାଁରେ ଚରଖା ସଙ୍ଘ ଗଢ଼ିଲେ । ଲୋକମାନଙ୍କୁ କପା ଚାଷ କରିବା ଓ ସୂତା କାଟିବା ଶିଖାଇଲେ । କଂଗ୍ରେସ ବିଷୟରେ ସେମାନଙ୍କୁ ବୁଝାଇଲେ ।

ପଦଯାତ୍ରା କଲାବେଳେ ଖାଲି ପାଦରେ ଚାଲି ଚାଲି ସେ ପାହାଡ଼-ପର୍ବତ, ନଈ-ନାଳ ପାର ହୋଇ ଗାଁ ଗଣ୍ଡାକୁ ଯାଉଥିଲେ । ଅଗନା-

ଅଗନି ବନସ୍ତ ଭିତରେ ଗଲାବେଳେ ହାତୀ, ବାଘ, ଭାଲୁ ହାବୁଡ଼େ ପଡୁଥିଲେ । ହେଲେ ଭୟ କଣ ସେ ଜାଣି ନଥିଲେ । ସେ ନିଜକୁ ଆଦିବାସୀଙ୍କ ଭିତରୁ ଜଣେ ବୋଲି ଭାବୁଥିଲେ । ତାଙ୍କ ସାଙ୍ଗରେ ମିଶି ସେ ବଣର ପିତାକନ୍ଦା, ମକା ଓ କାନ୍ଦୁଲ ପୋଡ଼ା ଖାଉଥିଲେ । ମାଣ୍ଡିଆ ଜାଉ, କୋଦ ଚ଼ାଉଳର ଭାତ ଆଉ ସୁଆଁ ଚ଼ାଉଳର ପେଜ ବି ଖାଉଥିଲେ । ସେମାନଙ୍କ ସାଙ୍ଗରେ ମିଶି ସେ ସାରା ରାତି ଦେଶିଆ ଭାଷାରେ ଜହ୍ନ ତରାର ଗୀତ ଓ ଫୁଲ-ଫଳର ଗୀତ ଗାଉଥିଲେ । ଲୋକଙ୍କ ସାଙ୍ଗେ ଏହି ମିଳାମିଶା ଗୁଣ ତାଙ୍କୁ ଲୋକପ୍ରିୟ କରିଦେଲା ।



ସେ ପଦଯାତ୍ରାରେ ବୁଲିଲେ ଗୁଣୁପୁର, ରାୟଗଡ଼ା, ବିଷମକଟକ, ମୁନିଗୁଡ଼ା, ଲକ୍ଷ୍ମୀପୁର, ନାରାୟଣ ପାଟଣା, କାକରିଗୁମ୍ମା, କୋରାପୁଟ, ମାଲକାନଗିରି, ବଇପାରିଗୁଡ଼ା, ନବରଙ୍ଗପୁର ଓ ଉମରକୋଟ ଆଦି ଅଞ୍ଚଳ । ଲୋକେ ତାଙ୍କ କଥା ଶୁଣିଲେ । ଏଠା ଲୋକେ ଗାନ୍ଧିଙ୍କୁ ଦେଖି ନଥିଲେ । ରାଧାକୃଷ୍ଣ ବାବୁ ଲୋକଙ୍କ ଆଖିରେ କୋରାପୁଟର ଗାନ୍ଧି ହୋଇଗଲେ । ତାଙ୍କ କଥା ହେଲା ବେଦର ଗାର । ଲୋକେ କଂଗ୍ରେସରେ ମିଶି ଚାରିଅଣିଆ ସଭ୍ୟ ହେବା ପାଇଁ ଆଗ୍ରହ ଦେଖାଇଲେ ।

୧୯୩୩ ବେଳକୁ କୋରାପୁଟ ଜିଲ୍ଲାରେ ତାଙ୍କ ଚେଷ୍ଟାରେ ଛବିଶି ହଜାର ନଅଶହ ଲୋକ କଂଗ୍ରେସରେ ମିଶିଥିଲେ । ଏହା କମ୍ କଥା ନଥିଲା । ଗାଁରେ ଗାଁରେ ସୂତାକଟା ଓ ଲୁଗାବୁଣା ସହିତ ସର୍ବଧର୍ମ ପ୍ରାର୍ଥନା ସଭାରେ 'ବୈଷ୍ଣବ ଜନ' ଭଜନ ବୋଲା ଯାଉଥିଲା ।

ଆଦିବାସୀ ଜୀବନରେ ବହୁତ ପରିବର୍ତ୍ତନ ଆସିଲା । ଲୋକେ ଡର ଭୟ ଛାଡ଼ି ଅନ୍ୟାୟ ବିରୋଧରେ ଲଢ଼ିବା ଶିଖିଲେ । ରାଧାକୃଷ୍ଣ ବିଶ୍ୱାସରାୟଙ୍କ କାର୍ଯ୍ୟରେ ସରକାର ଅସନ୍ତୁଷ୍ଟ ହେଲେ । ଏଣୁ ତାଙ୍କୁ ପାନେ ଦେବା ପାଇଁ ସରକାର ସୁଯୋଗ ଅପେକ୍ଷାରେ ରହିଲେ ।

## ଜିଲ୍ଲା ବାହାର ଦଣ୍ଡ

କଂଗ୍ରେସ କାମରେ ବିଶ୍ୱାସରାୟ ସାରା କୋରାପୁଟ ଜିଲ୍ଲା ବୁଲିଲେ । ଆଜି ଏ ଗାଁ ତ କାଲି ସେ ଗାଁ । ତାଙ୍କ କାମ ଦେଖି ଗୋରା ସରକାରଙ୍କ ମନରେ ଛନକା ପଶିଲା । ଏଣୁ ପୋଲିସ ତାଙ୍କ କାମ ଉପରେ କଡ଼ା ନଜର ରଖିଲେ । ୧୯୩୩ରେ ସରକାର ବିରୋଧୀ କାମ ପାଇଁ ତାଙ୍କ ବିରୋଧରେ ଜିଲ୍ଲା ବାହାର ୱାରଣ୍ଟ ବାହାର

କରାଗଲା । ସରକାରକୁ ନ ଜଣାଇ ଓ ଆଗରୁ ଅନୁମତି ନ ନେଇ ସେ ଜିଲ୍ଲା ଭିତରକୁ ଆସି ପାରିବେ ନାହିଁ ବୋଲି ଆଦେଶ ହେଲା । ତାଙ୍କୁ ବିଶାଖାପାଟଣା ଏଜେନ୍‌ସୀର ବୋବିଲ୍ଲି ଠାରେ ନଜରବନ୍ଦୀରେ ରଖାଗଲା ।

ତଥାପି ସେ ବୋବିଲ୍ଲିରୁ ଲୁଚି ଛପି ଆସି କୋରାପୁଟରେ କଂଗ୍ରେସ କାମ କରୁଥିଲେ । ସେତେବେଳକୁ ବିଜୟନଗରରୁ ନବରଙ୍ଗପୁରକୁ ଗୋଟିଏ ମାତ୍ର ବସ୍ ଚାଲୁଥିଲା । ଏହି ବସ୍‌ର ଡ୍ରାଇଭର ସୁରିନାରାୟଣ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ଠାରୁ ଖବର ନିଆଅଣା କରୁଥିଲେ ।

ବୋବିଲ୍ଲି ଠାରେ ଏମିତି ନଜରବନ୍ଦୀରେ ରାଧାକୃଷ୍ଣ ବିଶ୍ୱାସରାୟ ପ୍ରାୟ ଛଅ ମାସ ରହିଲେ । ସେ ନଥିଲାବେଳେ କୋରାପୁଟ ଜିଲ୍ଲାର କଂଗ୍ରେସ ପ୍ରଚାର କାମ ନବରଙ୍ଗପୁରର ସଦାଶିବ ତ୍ରିପାଠୀ, ଲକ୍ଷ୍ମୀଚନ୍ଦ୍ର ଦାସ, ମହମ୍ମଦ ବାଜୀ, ଜି. ଆନ୍ନାଜୀରାଓ, ସଦାନନ୍ଦ ମହାନ୍ତି, ରଘୁନାଥ ଚୌଧୁରୀ, ଜୟପୁରର ରାଧା ମୋହନ ସାହୁ ଓ ବ୍ରଜବନ୍ଧୁ ନନ୍ଦ ଆଦି କରୁଥିଲେ । କିନ୍ତୁ ରାଧାକୃଷ୍ଣ ବିଶ୍ୱାସରାୟ ଥିଲେ ଏମାନଙ୍କର ଗୁରୁ । ବାଟ ଦେଖାଇବା ଲୋକ ।

## କଂଗ୍ରେସ ସଂଗଠନ

୧୯୩୪ରେ ବୋବିଲ୍ଲିରୁ ଫେରି ରାଧାକୃଷ୍ଣ ବିଶ୍ୱାସରାୟ ଉତ୍କଳ ପ୍ରାଦେଶିକ କଂଗ୍ରେସ ସଭାପତିଙ୍କୁ କଟକ ସ୍ୱରାଜ ଭବନରେ ସାକ୍ଷାତ କଲେ । ସେହି ସମୟରେ କୋରାପୁଟ ଜିଲ୍ଲା କଂଗ୍ରେସ କମିଟି ଗଠନ କରିବା ପାଇଁ ତାଙ୍କୁ ଅନୁରୋଧ କରାଗଲା । ସେତେବେଳକୁ ଶଶିଭୂଷଣ ରଥ ବ୍ରହ୍ମପୁରରୁ 'ଦୈନିକ ଆଶା' ବୋଲି ଗୋଟିଏ ଖବର କାଗଜ

ବାହାର କରୁଥିଲେ । ଏହି ଖବର କାଗଜରେ ଗାନ୍ଧିଙ୍କ କଥା ଓ ସରକାରଙ୍କ ଅତ୍ୟାଚାର କଥା ବାହାରୁ ଥାଏ । ଦକ୍ଷିଣ ଓଡ଼ିଶାରେ ଏହା ଥିଲା ଏକମାତ୍ର ଖବର କାଗଜ । ଏହାକୁ ପଢ଼ି କଂଗ୍ରେସ କର୍ମୀ କେମିତି ହେବାକୁ ହେବ ସେ କଥା କୋରାପୁଟର ଲୋକେ ଜାଣୁଥିଲେ । ସେମାନଙ୍କ କାମ ବିଷୟରେ ମଧ୍ୟ ଜାଣିବାକୁ ପାଉଥିଲେ ।

୧୯୩୫ ମସିହା ଆରମ୍ଭରେ ଶଶିଭୂଷଣ ରଥ, ରାଧାକୃଷ୍ଣ ବିଶ୍ୱାସରାୟ ଓ ଦିବାକର ପଟ୍ଟନାୟକଙ୍କୁ ନେଇ ଗୋଟିଏ ସବ୍‌କମିଟି ଗଢ଼ା ହେଲା । କମିଟିର ନିଷ୍ପତ୍ତି ଅନୁସାରେ ନବରଙ୍ଗପୁର, କୋଟପାଡ଼, ଉମରକୋଟ, ଦିଗିସଲପା, ନନ୍ଦପୁର, ଡାବୁଗାଁ, ଭୈରଗୁଡ଼ା, ସୁନାବେଡ଼ା, ବଡ଼ ମାରଲା, ଦଶମନ୍ତପୁର, ଗୁଣୁପୁର ଓ ଜୟପୁର ଠାରେ କଂଗ୍ରେସ କମିଟିମାନ ଗଠନ କରାଗଲା । ଏହି କମିଟି ଗୁଡ଼ିକର ଦାୟିତ୍ୱରେ ରହିଲେ ଲକ୍ଷ୍ମୀଚନ୍ଦ୍ର ଦାସ, ବିଶ୍ୱନାଥ ମହାପାତ୍ର, ରବି ସିଂ ମାଝୀ, ଆନନ୍ଦ ବେହେରା, ଭଗବାନ ଖେମୁଣ୍ଡୁ, ସନୁ ମାଝୀ, ଦୁର୍ଲ୍ଲଭ ହନ୍ତାଳ, ମାଲୁ ସାନ୍ତା, ଦୀନବନ୍ଧୁ ଦାସ ଓ ପ୍ରହଲ୍ଲାଦ ପାଣିଗ୍ରାହୀ ଆଦି ନେତାମାନେ । ରାଧାକୃଷ୍ଣ ବିଶ୍ୱାସରାୟଙ୍କ ନେତୃତ୍ୱରେ ଗୋରା ସରକାରଙ୍କ ବିରୋଧରେ ଏହି ସଙ୍ଗଠନଗୁଡ଼ିକ କାମ କଲେ ।

ରାଜମେହେନ୍ଦ୍ରୀରୁ ଫେରି ରାଧାକୃଷ୍ଣ ବାବୁ ଜୟପୁରରେ 'ଉଦ୍ୟୋଗ ମନ୍ଦିର' ନାମରେ ଅନୁଷ୍ଠାନଟିଏ ଖୋଲିଲେ । ପରେ ଏହାର ନାମ କଂଗ୍ରେସ ଭବନ ହେଲା । ୧୯୩୫ରେ ପ୍ରଥମ ଥର ପାଇଁ

ବିଶ୍ୱାସରାୟ କୋରାପୁଟ ଜିଲ୍ଲା କଂଗ୍ରେସ କମିଟିର ସଭାପତି ହେଲେ । ସେ ଓଡ଼ିଶାର ବଡ଼ ବଡ଼ ନେତାମାନଙ୍କ ଭିତରେ ଗଣା ହେଲେ ।

## ଓଡ଼ିଶା ଅଲଗା ପ୍ରଦେଶ ହେଲା

ଓଡ଼ିଆ ଲୋକେ ଅନ୍ୟ ପ୍ରଦେଶମାନଙ୍କରେ ରହି ବହୁ ଦୁଃଖ କଷ୍ଟ ଭୋଗୁଥିଲେ । ମଧୁସୂଦନ ଦାସ, ଗୋପବନ୍ଧୁ ଦାସ, ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହର, ମୟୂରଭଞ୍ଜର ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଓ ପାରଳାଖେମୁଣ୍ଡି ମହାରାଜା କୃଷ୍ଣ ଚ଼ନ୍ଦ୍ର ଗଜପତିଙ୍କ ଚେ଼ଷ୍ଟାରେ ୧୯୩୬ ମସିହା ଏପ୍ରିଲ ମାସ ୧ ତାରିଖ ଦିନ ଓଡ଼ିଶା ଗୋଟିଏ ନୂଆ ପ୍ରଦେଶ ହେଲା । ଆମର ବହୁତ ଦିନର ଦାବି ପୂରଣ ହେଲା । ତଥାପି ଆମ ଓଡ଼ିଆ ଭାଇମାନେ ରହୁଥିବା କେତେ ଜାଗା ଅନ୍ୟ ପ୍ରଦେଶରେ ରହିଗଲା ।

ଓଡ଼ିଶାର ପ୍ରଥମ ଛୋଟଲାଟ ହେଲେ ସାର ଜନ୍ ଅଷ୍ଟିନ ହବାକ୍ । କଟକ ଓଡ଼ିଶାର ରାଜଧାନୀ ହେଲା । ଓଡ଼ିଶାର ଶାସନ ପାଇଁ ରେଭେନ୍ସା କଲେଜର ଗୋଟିଏ କୋଠରୀରେ ପ୍ରଥମ କରି କାମ ଆରମ୍ଭ ହେଲା ।

ନୂଆ ପ୍ରଦେଶ ଗଢ଼ାହେଲା ବେଳେ ଜୟପୁର ଜମିଦାରୀ ଓଡ଼ିଶାରେ ମିଶିଲା । ଜୟପୁରକୁ ଓଡ଼ିଶାରେ ମିଶାଇବା ପାଇଁ ହରିହର ମିଶ୍ର ଓ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ଅବଦାନ ଭୁଲିବାର ନୁହେଁ । ଫିଲିପ୍ ଡଫ୍ କମିଶନ୍ ଜୟପୁର ଓ ନବରଙ୍ଗପୁର ଆସିଥିବାବେଳେ ସେମାନେ ଏହି ମିଶ୍ରଣ ପାଇଁ ଦାବି ଜଣାଇଥିଲେ । ଏହାଛଡ଼ା ଓଡ଼ିଶାରେ

ଜୟପୁରର ମିଶ୍ରଣ ପାଇଁ ଜୟପୁର ରାଜା ବିକ୍ରମଦେବ ବର୍ମାଙ୍କ ଚେଷ୍ଟା ମଧ୍ୟ କିଛି କମ୍ ନ ଥିଲା ।

ଦେଶ ମିଶ୍ରଣ କାମରେ ରାଧାକୃଷ୍ଣ ପିଲାଟିବେଲୁ ଲାଗିଥିଲେ । ଓଡ଼ିଶା ନୂଆ ପ୍ରଦେଶ ହେବାରୁ ସେ ଲୋକମାନଙ୍କୁ ମିଠେଇ ବାଣ୍ଟିଥିଲେ । ଜୟପୁରରେ ସେଦିନ ଖୁବ୍ ଆନନ୍ଦ ଉତ୍ସବ ହୋଇଥିଲା ।

## ଓଡ଼ିଶା ଛୋଟଲାଟଙ୍କ କୋରାପୁଟ ଗସ୍ତ

୧୯୩୬ ସାଲର କଥା । ଓଡ଼ିଶାର ଛୋଟଲାଟ ହବାକ୍ ସାହେବ କୋରାପୁଟ ଜିଲ୍ଲା ଗସ୍ତରେ ଆସିବା ଠିକ୍ ହେଲା । ଜୟପୁରରେ ଥିବା ଗୋରା ସରକାରଙ୍କ ଲୋକେ ଏ ବିଷୟ ଜୟପୁର ରାଜାଙ୍କ ଦେବାନ ସି.ଭି. ରାଓଙ୍କୁ ଜଣାଇଲେ । ରାଜା ବିକ୍ରମଦେବ ବର୍ମା ଲାଟସାହେବଙ୍କର ରହିବା, ଖାଇବା ଓ ଶିକାର କରିବା ଆଦିର ସୁବ୍ୟବସ୍ଥା କରିବାକୁ ଆଦେଶ ଦେଲେ । ସେତେବେଳକୁ କୋରାପୁଟର କଲେକ୍ଟର ଥିଲେ ବେଲ୍ ସାହେବ । ତାଙ୍କ ଆଦେଶରେ ସବୁ ଯୋଗାଡ଼ ହେଲା । ଲାଟସାହେବ ଆସିଲେ । ତାଙ୍କୁ ଯେଉଁ ପଟୁଆରରେ ବାଇଦ ବଜେଇ ଓ ବାଣ ଫୁଟେଇ ଦିବାନ ବଙ୍ଗଳାକୁ ଅଣାଗଲା, ସେଟା ବି ଗୋଟେ ଦେଖିବାର କଥା । ସାହେବଙ୍କ ରହଣି କାଳରେ ଜୟପୁର ଠାରୁ ଚଉଦମାଇଲ ଦୂରର ବଇପାରୀଗୁଡ଼ା ଅଞ୍ଚଳରେ ଥିବା ରାମଗିରି ବଣରେ ଶିକାର କରିବା ଠିକ୍ ହେଲା ।

ରାମଗିରି ବଣ । ଅଗନା ଅଗନି ବନସ୍ତ । କୋଲାବ ନଈ । ତାରା ଓ ଲୁଲେରୁ ପାହାଡ଼ । ଘଞ୍ଚ ଶାଳବଣ । ଦିନରେ ସୂର୍ଯ୍ୟ କିରଣ ତଳେ ପଡ଼େ ନାହିଁ । ବହୁ ଜଣା ଅଜଣା ଗଛବୃଛରେ ଭରା । ବଣରେ

ବଣ ମଇଁଷି, ଗୟଳ, ମହାବଳ, କଲରା ପତରିଆ, ଚିତା ବାଘ, ଭାଲୁ, ସମ୍ବର, ଝିଆଦ, କୁତ୍ରା, ହରିଣ, ବଣ କୁକୁଡ଼ା, ମୟୂର ଓ ବଣ ପାରା ଆଦି କେତେ କ'ଣ ପଶୁପକ୍ଷୀ । ରାଜାଙ୍କ ହାତୀ ଚଢ଼ି ସାହେବ ଶିକାରକୁ ଯିବେ । ନଳୀ, ଗୁଳି ସଜ ହେଲା । ବାଣୁଆମାନଙ୍କୁ ଖଞ୍ଜା ହେଲା । ବଣର ଝରଣା କୂଳରେ ମଞ୍ଚା ବନ୍ଧା ହେଲା । ଶହ ଶହ ଲୋକଙ୍କୁ ରଜାଘର ପାଇକମାନେ ଜନ୍ତୁ ହୁରୁଡେଇବା ପାଇଁ ଭିଡ଼ି ଆଣିଲେ ।

ସାହେବ କେମ୍ପ କରିବେ । ତାଙ୍କ ସାଙ୍ଗରେ ଆସିବେ ଶାସନ କରୁଥିବା କେତେ କେତେ ଲୋକ । ସେମାନଙ୍କ ଖାଇବା ପିଇବା ପାଇଁ ବଣ ଭିତରେ ଥିବା ଗାଁ ଲୋକଙ୍କଠୁ ଜୋର୍ ଜବରଦସ୍ତ ଯଅ, ସରୁ ଚାଉଳ ଓ ଫଳମୂଳ ଆଦି ସଂଗ୍ରହ କରାହେଲା । ଲୋକଙ୍କୁ ବେଠି ଖଟିବା ପାଇଁ ଅଣାଗଲା । ମଞ୍ଚାତଳେ ବନ୍ଧା ହେବା ପାଇଁ ଲୋକେ ପାଳିଥିବା ଗାଈ, ବଳଦ, ମଇଁଷି, ଛେଳି ଓ ମେଣ୍ଢା ସବୁ ଜବରଦସ୍ତ ଗୁହାଳରୁ ଫିଟାଇ ନିଆଗଲା । ଲୋକେ ଲୁହ ନ କାନ୍ଦି ରକତ କାନ୍ଦିଲେ ।

ସାହେବ ହାତୀରେ ଚଢ଼ି, ବାଘ, ସମ୍ବର ଶିକାର କରି ଦିନା କେତେ ମଉଜ ମଜଲିସ୍‌ରେ କଟେଇ ଫେରିଗଲେ । ରାଜାଙ୍କ ଲୋକେ ଏବଂ ସରକାରଙ୍କ ଲୋକେ ଜନସାଧାରଣଙ୍କୁ ଏହିଭଳି ଶୋଷଣ କରି ଚାଲିଲେ ।

ଲୋକଙ୍କ ଦୁଃଖକଥା ରାଧାକୃଷ୍ଣ ବିଶ୍ୱାସରାୟଙ୍କ କାନରେ ପଡ଼ିଲା । ସେ ପଦଯାତ୍ରାରେ ଯାଇ ଗାଁ ଗାଁ ବୁଲି ତଥ୍ୟ ସଂଗ୍ରହ କଲେ । ଏହି

ଅତ୍ୟାଚାରର କାହାଣୀ ଲେଖି ସେ ସେତେବେଳର 'ସମାଜ' ଖବର କାଗଜକୁ ପଠାଇଥିଲେ ।

ବାବୁ ଲିଙ୍ଗରାଜ ମିଶ୍ର ତାକୁ 'ସମାଜ'ରେ ଛପାଇ ଦେଲେ । ସାରା ଓଡ଼ିଶାରେ ଏ ବିଷୟ ଚର୍ଚ୍ଚା ହେଲା । ହବାକ୍ ସାହେବ ଏହା ଜାଣି ଲୋକମାନଙ୍କ ଠାରୁ ଅନ୍ୟାୟରେ ଅଣା ଯାଇଥିବା ଜିନିଷର ଦାମ୍ ଫେରାଇ ଦେବାକୁ ଆଦେଶ ଦେଲେ । ଜୟପୁର ରାଜାଙ୍କ ଦେବାନ ଏହା ଭରଣା କଲେ । କୋରାପୁଟର ଆଦିବାସୀ ଲୋକେ କଂଗ୍ରେସ ଯୋଗୁଁ ଏହା ହେଲା ବୋଲି ଜାଣିଲେ । ରାଧାକୃଷ୍ଣ ବାବୁଙ୍କୁ ସେମାନେ ଦେବତା ଭଳି ମାନିଲେ । ସେ ଯାହା କହିଲେ ଲୋକେ ମାନିଲେ ।

## ଓଡ଼ିଶାରେ ଭୋଟ ହେଲା

ଓଡ଼ିଶା ନୂଆ ପ୍ରଦେଶ ହେଲା । ଶାସନ କରିବା ପାଇଁ ଲୋକ ବାଛିବାକୁ ୧୯୩୭ ରେ ଭୋଟ ହେଲା । କୋରାପୁଟ ଲୋକଙ୍କ ମନରେ ନୂଆ ଆଗ୍ରହ । ସରକାରଙ୍କ ତରଫରୁ ଲୋକ ଠିଆ ହେଲେ ଭୋଟରେ । ଏମାନଙ୍କର ରଙ୍ଗପେଡ଼ି ଭୋଟ ବାକସ । କଂଗ୍ରେସିଆ ମାନଙ୍କର ହଳଦିଆ ପେଡ଼ି ।

ଗାଁରେ ଗାଁରେ କଂଗ୍ରେସ ସଭା ହେଲା । ଗାନ୍ଧିଙ୍କୁ ମାନୁଥିବା ଲୋକେ ଦିନରାତି ବିଚାର ନ କରି ପ୍ରଚାର କଲେ । ସାରା ଓଡ଼ିଶାରୁ ୬୦ ଜଣ ବଛା ହେବେ, କୋରାପୁଟରୁ ତିନି ଜଣ । ନବରଙ୍ଗପୁରରୁ ସଦାଶିବ ତ୍ରିପାଠୀ, କୋରାପୁଟରୁ ରାଧାକୃଷ୍ଣ ବିଶ୍ୱାସରାୟ ଓ ଜୟପୁରରୁ ରାଧା ମୋହନ ସାହୁ କଂଗ୍ରେସରୁ ଛିଡ଼ା ହେଲେ । କଂଗ୍ରେସ ପ୍ରାର୍ଥୀଙ୍କ ବିରୋଧରେ ହରିହର ମିଶ୍ର ନବରଙ୍ଗପୁରରୁ, ଜୟପୁର ରାଜାଙ୍କ ଜୋଇଁ

ବିଦ୍ୟାଧର ସିଂହଦେଓ କୋରାପୁଟରୁ ଓ ବାଳକୃଷ୍ଣ ପାତ୍ର ଜୟପୁରରୁ ଛିଡ଼ା ହେଲେ ।

କଂଗ୍ରେସର ପ୍ରଚାର ଏମିତି ହେଲା ଯେ, ରାଜା ଜମିଦାରମାନେ ମଧ୍ୟ ପଛରେ ପଡ଼ିଗଲେ । ସେତେବେଳକୁ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥାଆନ୍ତି ନୀଳକଣ୍ଠ ଦାସ । ସେ ବ୍ରହ୍ମପୁରର ଦିବାକର ପଟ୍ଟନାୟକଙ୍କ ସହିତ ଆସି ପ୍ରଚାର କଲେ । ପଣ୍ଡିତ ନୀଳକଣ୍ଠ ଦାସ କୋଟପାଡ଼, କୋରାପୁଟ ଓ ନବରଙ୍ଗପୁର ଆଦି ଜାଗାରେ ଭାଷଣ ଦେଲେ । ତାଙ୍କ ସଭାରେ ହଜାର ହଜାର ଲୋକ ହେଉଥିଲେ ।

ସେ ସମୟରେ ସବୁଲୋକ ଭୋଟ ଦେଇ ପାରୁ ନ ଥିଲେ । ଯେଉଁ ଲୋକ ସରକାରଙ୍କୁ ଦୁଇଟଙ୍କା ଖଜଣା ଦେଉଥିଲା, ତା'ର ଭୋଟ ଦେବା ଅଧିକାର ଥିଲା । ବହୁ ଲୋକ କଂଗ୍ରେସକୁ ହଳଦିଆ ପେଡ଼ିରେ ଭୋଟ ଦେଇ ଜିତାଇଲେ । କଂଗ୍ରେସର ତିନି ଜଣ ଯାକ ପ୍ରାର୍ଥୀ ଜିଣିଲେ ।

ଜମିଦାର ଓ ସରକାରଙ୍କ ଲୋକେ ରାଗିଯାଇ ଗାଁ ଗହଳିରେ ରହୁଥିବା ଓ କଂଗ୍ରେସରେ ମିଶିଥିବା ଲୋକମାନଙ୍କୁ ନାହିଁ ନଥିବା ହିନସ୍ତା କଲେ । ଜାଗା ଜାଗାରେ ଗାନ୍ଧିବାଦୀ ଲୋକମାନେ ଏହାର ପ୍ରତି ରୋଧ କଲେ ।

ଭୋଟରେ ଜିଣି କଂଗ୍ରେସ ୧୯୩୭ରେ ସରକାର ଗଢ଼ିଲା । ବ୍ରହ୍ମପୁରର ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ହେଲେ । ତାଙ୍କ ସାହାଯ୍ୟ ପାଇ ରାଧାକୃଷ୍ଣ ବିଶ୍ୱାସରାୟ କୋରାପୁଟରେ ଢେରକାମ କଲେ ।

ସେ ଓଡ଼ିଶାର ଜଣେ ନାମୀ ଲୋକ ହେଲେ । ଗାନ୍ଧି ବତାଇଥିବା ବାଟରେ ସେ ଚାଲୁଥିଲେ ।

ସେ ଜାଣିଥିଲେ କୋରାପୁଟ ଆଦିବାସୀ ଲୋକଙ୍କର ମାଟି । ଏମାନେ ସରଳ । ସରଳତା ଯୋଗୁଁ ଜମିଦାର ଓ ଗୋରା ସରକାରଙ୍କ ଲୋକେ ଏମାନଙ୍କୁ ବେଶି ଠକୁଛନ୍ତି । ଏମାନେ ଡରି ଡରି ମରୁଛନ୍ତି । ଏମାନଙ୍କ ମନରୁ ଡର ଛଡ଼ାଇବାକୁ ହେବ, ତାଲିମ ଦେବାକୁ ହେବ । ଏଣୁ କୋରାପୁଟ ଜିଲ୍ଲାର ବିଭିନ୍ନ ଜାଗାରେ ସେ ତାଲିମ କେନ୍ଦ୍ରମାନ ଖୋଲିଲେ ।

କୁଢେନ୍ଦ୍ରୀ, ବୁର୍ଜା, ରାୟଗଡ଼ା, ବିଷମକଟକ, ବଇପାରିଗୁଡ଼ା ଓ ନବରଙ୍ଗପୁର ଆଦି ଜାଗାରେ ମାସ ମାସ ଧରି କଂଗ୍ରେସ କର୍ମୀମାନଙ୍କୁ ତାଲିମ ଦିଆଗଲା । ଗାନ୍ଧି ବତାଇଥିବା ଏଗାର ଗୋଟି କଥାଯାକ ମାନି ସମସ୍ତେ କାମ କଲେ । ସତ କହିବା, ହିଂସା ନ କରିବା, ଛୁଆଁ ଅଛୁଆଁ ନ ମାନିବା, ନିଶାପାନ ଛାଡ଼ିବା, ସୂତାକାଟିବା, ଖଦି ବୁଣିବା, କପା ଚାଷ କରିବା, ପାଠ ପଢ଼ିବା, ଭଗବାନଙ୍କ ଉପରେ ବିଶ୍ୱାସ ରଖିବା, ଅନ୍ୟାୟକୁ ନସହି ଅହିଂସ ଉପାୟରେ ତାହାର ପ୍ରତିବାଦ କରିବା ଆଦି ଶିକ୍ଷା ଦିଆଗଲା ।

ତାଲିମ ପାଇ କଂଗ୍ରେସ କର୍ମୀମାନେ ନ୍ୟାୟ ପାଇଁ ଲଢ଼େଇ କରିବା ଶିଖିଲେ । ନିଡର ହେଲେ । ସେମାନଙ୍କ ମନରେ ସାହସ ଆସିଲା । ବହୁ ଆଦିବାସୀ ଓ ହରିଜନ ଲୋକେ କଂଗ୍ରେସର ଚାରିଅଣିଆ ସଭ୍ୟ ହୋଇଗଲେ । ସେମାନେ ଯୋଡ଼ିଏ ମନ୍ତ୍ର ଶିଖିଲେ । ଗୋଟିଏ 'ବନ୍ଦେ ମାତରମ୍' ଓ ଅନ୍ୟଟି 'ଗାନ୍ଧି ମହାତ୍ମାକୀ ଜୟ ।'

## ନୂଆପୁଟ କଂଗ୍ରେସ ତାଲିମ କେନ୍ଦ୍ର

ରାଧାକୃଷ୍ଣ ବିଶ୍ୱାସରାୟ କୋରାପୁଟ ଜିଲ୍ଲାର ଜୟପୁର ସହରଠାରୁ ଚାରି ମାଇଲ ଦୂରରେ ଥିବା ନୂଆପୁଟ ଗାଁରେ କଂଗ୍ରେସ କର୍ମୀ ମାନଙ୍କ ପାଇଁ କେନ୍ଦ୍ରଟିଏ ଖୋଲିଲେ । ଏହା ୧୯୩୮ ମସିହାର କଥା ।

ଜୟପୁର ଠାରୁ ଜୟନଗର ବାଟଦେଇ ପାଞ୍ଜିଆଗୁଡ଼ା ପାର ହୋଇ ପଲକାପୁଟ ଗ୍ରାମର ଡାହାଣ ହାତ ପଟେ ବାଟ ଭାଙ୍ଗି ଦୁଇ ମାଇଲ ଗଲେ ଯେଉଁଠି ସତୀ ନଈ ଓ କୋଲାବ ନଈ ମିଶିଛି, ସେ ପାଖରେ କୋଡ଼ିଏ ତିରିଶ ଆଦିବାସୀ ଘରକୁ ନେଇ ନୂଆପୁଟ ଗାଁ । ଗାଁ ଚାରିପଟେ ଘଞ୍ଚବଣ । ଆଖ ପାଖରେ ଘେରେଇ ହୋଇ ରହିଛି ସାନ ବଡ଼ ପାହାଡ଼ କେତୋଟି । ସେ ହେଲା - ଗିରି କୁପୁଲି, ସମଦାସପୁଟ କୁପୁଲି, ଗୁମା ଡଙ୍ଗର, ଭାତ ଡଙ୍ଗର, ପୋସଗୁଡ଼ା ଡଙ୍ଗର, କାଲିଆ ଡଙ୍ଗର, ମାଳ ପର୍ବତ, ବିଷୟୀପୁଟ କୁପୁଲି, ଦୁର୍ଗାଡଙ୍ଗର ଓ ବାଘ ଡଙ୍ଗର ଆଦି । ସେତେବେଳେ ଏଠି ଭାରି ବାଘ ଭୟ । ବଣଜନ୍ତୁ ହାଉଜାଉ । ଲୋକେ ପାଦଚଲା ରାସ୍ତାରେ ଯିବା ଆସିବା କରନ୍ତି ।

ଏଇଗାଁରେ ରାଧାକୃଷ୍ଣ ବିଶ୍ୱାସରାୟ ନିଜ ପରିବାର ସହ ୧୯୨୨ରେ ଆସି ରହିଥିଲେ । ଗାଁ ଲୋକେ ତାଙ୍କ କଥା ଅନୁସାରେ କଂଗ୍ରେସରେ ମିଶିଲେ । ନୂଆପୁଟ ହେଲା କଂଗ୍ରେସ କାମର ମୂଳଗାଁ । ରାଧାକୃଷ୍ଣ ବିଶ୍ୱାସରାୟଙ୍କ ଯୋଗୁଁ ଏଠି ସାରା କୋରାପୁଟ ଜିଲ୍ଲାର ମୁଖିଆ କଂଗ୍ରେସ କର୍ମୀଙ୍କୁ ତାଲିମ ଦେବାର ବ୍ୟବସ୍ଥା ହେଲା ।

ସତୀ ନଈର ଶହେ ହାତ ପଶ୍ଚିମ ଦିଗକୁ ଥିଲା ଗୋଟିଏ ବଡ଼ କଳା ମୁଗୁନି ପଥର । ଲୋକେ ତାକୁ ବଡ଼ ଚାଞ୍ଚଡ଼ା କହୁଥିଲେ । ଏହି

ପଥରକୁ ମଝିରେ ରଖି କୋଲାବ ନଈ କୂଳରେ ତିଆରି ହେଲା ଖେତ୍ ଚନ୍ଦ୍ରା ଓ ଚନ୍ଦରି ବା ବାଉଁଶ ବା ବାଉଁରା ତଗର ଚାଞ୍ଚ ଦେଇ ଧାଡ଼ିକି ଧାଡ଼ି ଘର । ଚାଳ ଛପର । ସତୀ ନଈ କୂଳରେ ରନ୍ଧା ଖୁଆଡ଼ । ମଝିରେ ଖୋଲା ଜାଗା । ପ୍ରାର୍ଥନା କରିବା, ସୂତାକାଟିବା, ବାଡ଼ି ବୁଲାଇବା ଓ କସରତ କରିବା କାମ ଏଠି ଚାଲିଲା ।

ଏହି ତାଲିମ୍ କେନ୍ଦ୍ରକୁ ଉଦ୍‌ଘାଟନ କରିଥିଲେ ଗୋପବନ୍ଧୁ ଚୌଧୁରୀ । ସାରା ଜିଲ୍ଲାରୁ ତିନିଶହ ପଚାଶ ଜଣ ଗାନ୍ଧିବାଦୀ ଲୋକଙ୍କୁ ପ୍ରଥମ ଦଫାରେ ତାଲିମ୍ ଦିଆ ହେଲା । ଏହି ତାଲିମ୍ କେନ୍ଦ୍ରକୁ ଚଳାଇବାକୁ ଆସିଲେ ଆଚାର୍ଯ୍ୟ ହରିହର ଦାସ ଓ ଗୋକୁଳାନନ୍ଦ ମହାନ୍ତି । ଦେଖିବାକୁ ଆସିଲେ ବିଶ୍ୱନାଥ ଦାସ । ପାହାଡ଼, ବଣ ଘେରରେ ଥିବା ଗାଁରୁ ଆସିଥିବା କଂଗ୍ରେସ କର୍ମୀ ଏଠି ଶିଖିଲେ ସେବା କରିବା । କଷ୍ଟରୁ ମୁକ୍ତି ପାଇବା ପାଇଁ ଦୀର୍ଘ ମାସେ କାଳ ଧରି ଏଠାରେ ତାଲିମ ଦିଆଗଲା । ସେମାନେ କେମିତି ଏକାଠି ମିଶି ଅନ୍ୟାୟର ସାମନା କରିବେ ଏହା ଶିଖିଲେ ।

ଯେଉଁ ମୁଖ୍ୟ ଲୋକ ମାନେ ଏଠି ତାଲିମ୍ ନେଲେ ସେମାନେ ହେଲେ ମହମ୍ମଦ ବାଜୀ, ସଦାନନ୍ଦ ମହାନ୍ତି, ଲକ୍ଷ୍ମୀ ଚନ୍ଦ୍ର ଦାସ, ଭଗବାନ ଖେମୁଣ୍ଡୁ, ଲିମା ସାଉନ୍ତା, ଦୁଲଭ ହନ୍ତାଳ, ମଧୁସେଠୀ, ଗୋପି କ୍ରିସାନୀ, ସନୁମାଝୀ, ସୁନଧର ମାଝୀ, ରାଇଧର ଜାନୀ, ବଲ୍ଲଭ ଖୋରା ଓ ଲକ୍ଷ୍ମଣ ନାୟକ ଆଦି । ପରବର୍ତ୍ତୀ କାଳରେ ଏମାନେ କଂଗ୍ରେସ ଆନ୍ଦୋଳନର ମୁଖିଆ ହେଲେ । ଏମାନେ ବୀରତ୍ୱର ସହିତ ଗୋରା ସରକାରଙ୍କ ବିରୋଧରେ କାମକରି ନିର୍ଭୟରେ ଜେଲ୍ ଗଲେ । ଦଣ୍ଡ

ଭୋଗିଲେ । କେତେ କଷ୍ଟ ସହିଲେ । ହେଲେ କଂଗ୍ରେସ ନୀତିରୁ ଓହରିଲେ ନାହିଁ । ଅହିଂସାକୁ ଛାଡ଼ିଲେ ନାହିଁ । ଏମାନେ ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ନିଜର ଦୀକ୍ଷାଗୁରୁ ମାନି ଦେଶ ଲାଗି ଜୀବନ ଦେବାପାଇଁ ବି ପଛାଇଲେ ନାହିଁ ।

ଏତିକିବେଳେ ସାରା ପୃଥିବୀରେ ଯୁଦ୍ଧଗୋଳ ହେଲା । ଆମ ଦେଶକୁ ଗୋରାମାନେ ଶାସନ କରୁଥିଲେ । ସେମାନେ ଜୋର ଜବରଦସ୍ତ ଆମ ଦେଶକୁ ଯୁଦ୍ଧ ଭିତରେ ପୂରାଇ ଦେଲେ । ଯୁଦ୍ଧ ପାଇଁ ଆମ ଲୋକମାନଙ୍କୁ ଯୁଦ୍ଧ ଚାନ୍ଦା ଦେବା ପାଇଁ ଗୋରା ସରକାର ବାଧ କଲେ । ଗାନ୍ଧିଜୀ କହିଲେ 'ଯୁଦ୍ଧ ଚାନ୍ଦା ଦିଅ ନାହିଁ । ଜେଲ୍ ଯାଅ । ସରକାରଙ୍କୁ ବିରୋଧ କର । ସତ୍ୟାଗ୍ରହ କର ।' ସାରା ଦେଶର ଲୋକେ ସତ୍ୟାଗ୍ରହ କରିବା ପାଇଁ ଅଣ୍ଟା ଭିଡ଼ିଲେ । କୋରାପୁଟ ଜିଲ୍ଲାରେ ଗାନ୍ଧିଙ୍କ କଥା ପହଞ୍ଚିଲା । ସମସ୍ତେ ମାତିଲେ ଏହି କାମରେ ।

## ପ୍ରଦେଶ କଂଗ୍ରେସ ସଭାପତି

ଯୁଦ୍ଧ ବାତାବରଣରେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ଓଲଟ ପାଲଟ ହେବାକୁ ଲାଗିଲା । କେତେକ ନେତା ଯୁଦ୍ଧବେଳେ କଂଗ୍ରେସର ସରକାରୀ ବିରୋଧ ନୀତି ପସନ୍ଦ କଲେ ନାହିଁ । କଂଗ୍ରେସ ବିରୋଧୀ ଏହି ନେତାମାନେ ଯୁଦ୍ଧରେ ସାହଯ୍ୟ କରିବା ପାଇଁ ଓଡ଼ିଶାରେ ସରକାର ଗଢ଼ିଲେ । ଏହି ସମୟରେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଆସନ ପାଇଁ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ପ୍ରାର୍ଥୀ ଠିଆ କରାଗଲା । ଲୋକମତ ତାଙ୍କ ସପକ୍ଷରେ ନଥିଲା । ପଣ୍ଡିତ ମିଶ୍ର ପ୍ରଦେଶ କଂଗ୍ରେସ ସଭାପତି ହେବା ବହୁଲୋକ ପସନ୍ଦ କଲେ ନାହିଁ । ଶେଷରେ ଜଣାପଡ଼ିଲା

ଯେ, ଗୋଦାବରୀଶ ବାବୁ ଯୁଦ୍ଧକାଳୀନ ମନ୍ତ୍ରିମଣ୍ଡଳରେ ଯୋଗ ଦେବେ । ତାଙ୍କର ନିକଟତମ ମହଲରୁ ଏକଥା ଜଣା ପଡ଼ିବା ପରେ ତାଙ୍କ ବିରୋଧରେ ଜଣେ ଟାଣୁଆ କଂଗ୍ରେସ ଲୋକ ଠିଆ ହେବା କଥା ହେଲା ।

ସେତେବେଳକୁ ରାଧାକୃଷ୍ଣ ବିଶ୍ୱାସରାୟ କୋରାପୁଟ ଜିଲ୍ଲା କଂଗ୍ରେସ ସଭାପତି । ସାରା ଓଡ଼ିଶାରେ ତାଙ୍କର ପ୍ରଭାବ । ତାଙ୍କୁ ଗୋଦାବରୀଶ ମିଶ୍ରଙ୍କ ବିପକ୍ଷରେ ଛିଡ଼ା କରାଗଲା । ଭୋଟ ହେଲା । ରାଧାକୃଷ୍ଣ ବିଶ୍ୱାସରାୟ ୭୪ଟି ଓ ପଣ୍ଡିତ ଗୋଦାବରୀଶ ମିଶ୍ର ୬୫ ଟି ଭୋଟ ପାଇଲେ । ରାଧାକୃଷ୍ଣ ଯୁଦ୍ଧକାଳରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ସଭାପତି ହେଲେ । ପୁଣି ସେ ଅଖିଳ ଭାରତ କଂଗ୍ରେସ କମିଟିର ଜଣେ ସଭ୍ୟଭାବେ ମଧ୍ୟ ନିର୍ବାଚିତ ହେଲେ ।

ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ସଭାପତିଭାବେ ବମ୍ବେ ଯାଇ ଗାନ୍ଧିଜୀଙ୍କ ଭାରତ ଛାଡ଼ ପ୍ରସ୍ତାବକୁ ସେ ସମର୍ଥନ କଲେ । ୧୯୪୦ ରୁ ୪୫ ଯାଏ ସେ ସଭାପତି ରହି ଓଡ଼ିଶାରେ କଂଗ୍ରେସ କାମର ବିସ୍ତାର କଲେ । ସେତେବେଳକୁ ହରେକୃଷ୍ଣ ମହତାବ କଂଗ୍ରେସରେ ପ୍ରଭାବ ବିସ୍ତାର କରିବା ଆରମ୍ଭ କରି ଦେଇଥିଲେ । ତାଙ୍କ ଗୋଷ୍ଠୀ ରାଧାକୃଷ୍ଣ ବିଶ୍ୱାସ ରାୟଙ୍କୁ ସଭାପତି ପଦ ପାଇଁ ସମର୍ଥନ ଜଣାଇଲେ ।

ପଣ୍ଡିତ ନୀଳକଣ୍ଠ ଦାସ ୧୯୪୦ମସିହାରେ ବ୍ରହ୍ମପୁର କଂଗ୍ରେସ କମିଟି ସଭାରେ ପ୍ରଦେଶ କମିଟିର କାମକୁ ସମାଲୋଚନା କଲେ । ସେ ଗାନ୍ଧିଙ୍କ କେତେକ କଥାକୁ ପସନ୍ଦ ନକରି ଭାଷଣ ମଧ୍ୟ ଦେଲେ ।

ଏହା ଓଡ଼ିଶାର ବହୁ କଂଗ୍ରେସ ସଭ୍ୟଙ୍କୁ ଭଲ ଲାଗିଲା ନାହିଁ । ପଣ୍ଡିତ ନୀଳକଣ୍ଠ ଚାହୁଁଥିଲେ ଗୋଦାବରୀଶ ମିଶ୍ର ସଭାପତି ହୁଅନ୍ତୁ । ତାହା ହେଲା ନାହିଁ । ଯୁଦ୍ଧ ସମୟରେ ଓଡ଼ିଶାରେ ୧୯୪୦ ରୁ ୧୯୪୫ ଭିତରେ ଗୋଟିଏ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ପଣ୍ଡିତ ନୀଳକଣ୍ଠଙ୍କ କଥା ମାନି ଗୋଦାବରୀଶ ସେଥିରେ ଯୋଗ ଦେଇଥିଲେ ।

ଓଡ଼ିଶା କଂଗ୍ରେସରେ ଏମିତି ଅସ୍ଥିରତା ବେଳେ ରାଧାକୃଷ୍ଣ ବିଶ୍ୱାସରାୟ ସଭାପତି ପଦ ସମ୍ଭାଳି ଥିଲେ । ଏହା ତାଙ୍କ ସାହସ, ଧୈର୍ଯ୍ୟ ଓ ଲୋକପ୍ରିୟତାର ପରିଚୟ ଦେଇଥିଲା ।

ସେ କଂଗ୍ରେସ ସଭାପତି ଥାଇ ସ୍ୱାଧୀନ ଭାବରେ ନିଷ୍ପତ୍ତି ନେଉଥିଲେ । ସଭାପତି ଥିବା ବେଳେ କଂଗ୍ରେସ କାମରେ ବାରମ୍ବାର କଟକ ଯିବାକୁ ପଡୁଥିବାରୁ ସେ ଜିଲ୍ଲା କଂଗ୍ରେସର କାମ ଠିକ୍ ଭାବେ କରି ପାରୁ ନାହାନ୍ତି ବୋଲି ଅନୁଭବ କଲେ । ଏଣୁ ଉତ୍କଳ ପ୍ରଦେଶ କଂଗ୍ରେସ ସଭାପତି ପଦରୁ ସେ ଇସ୍ତଫା ଦେଇ ଦେଲେ । ମାତ୍ର ମହତାବ ବାବୁ ଏହା ନ କରିବାକୁ ତାଙ୍କୁ ଅନୁରୋଧ କଲେ ।

## ଯୁଦ୍ଧ ଚାନ୍ଦା ଦିଅ ନାହିଁ

ଗାନ୍ଧିଙ୍କ ଡାକରାରେ ସାରା ଭାରତରେ ଚମକ ଖେଳିଗଲା । ଗାଁରେ, ସହରରେ ସବୁ କଂଗ୍ରେସ କର୍ମୀ ଯୁଦ୍ଧ ଚାନ୍ଦା ନ ଦେବା ପାଇଁ ପ୍ରତିଜ୍ଞା କଲେ । ସରକାରଙ୍କ ଦମନ ଲୀଳା ବଢ଼ିଗଲା । ଯେଉଁମାନେ ବିରୋଧ କଲେ ସେମାନେ ଲାଠି ମାଡ଼ ଖାଇଲେ । ଜେଲ୍ ଭିତରେ ସଢ଼ିଲେ ।

ରାଧାକୃଷ୍ଣ ବିଶ୍ୱାସରାୟ ସାରା ଜିଲ୍ଲାରେ ବୁଲି ବୁଲି ଗୋରା ସରକାରଙ୍କୁ ଦେଶରୁ ହଟାଇ ଦେବା ପାଇଁ ସଭା ସମିତି କଲେ । ତାଙ୍କୁ ସାହାଯ୍ୟ କଲେ ଗୁଣୁପୁରର ପ୍ରହ୍ଲାଦ ପାଣିଗ୍ରାହୀ, ଜୟପୁରର ରାଧାମୋହନ ସାହୁ, ନବରଙ୍ଗପୁରର ସଦାଶିବ ତ୍ରିପାଠୀ ଓ ଲକ୍ଷ୍ମୀ ଚନ୍ଦ୍ର ଦାସ, କୋଟପାଡ଼ର କପିଳ ପାତ୍ର ଓ ବିଶ୍ୱନାଥ ମହାପାତ୍ର ଏବଂ ଘୁମର ଗାଁର ନୀଳକଣ୍ଠ ପାତ୍ର ଆଦି । ତାଙ୍କ କଥାକୁ ମାନି ମାତିଲି-ମାଇକାନ ଗିରି ଅଞ୍ଚଳର ଲକ୍ଷ୍ମଣ ନାୟକ ଆଦିବାସୀ ମାନଙ୍କ ଭିତରେ ଚେତନା ଜଗାଇଲେ । ଡାବୁଗାଁରେ ସନୁ ମାଝୀ ଓ ଉମରକୋଟରେ ରବି ସିଂ ମାଝୀ ମଧ୍ୟ ସେହି କାମ କଲେ । ଏହା ଫଳରେ ସରକାରୀ ପୋଲିସ, ଜଙ୍ଗଲବାଲା ଓ ରେଭେନ୍ୟୁବାଲା ଭାରି ରାଗିଲେ । ଗାଁ ଗଣ୍ଡାରେ ପଶି ଲୋକଙ୍କୁ ମାରଧର କଲେ । ପରିସ୍ଥିତି ଜଟିଳ ହେଲା ।

ଇତିମଧ୍ୟରେ ଗାନ୍ଧିଜୀ ବ୍ୟକ୍ତିଗତ ସତ୍ୟାଗ୍ରହ କରିବା ପାଇଁ ଡାକ ଦେଲେ । ଯେତେବେଶି ଲୋକ ନିଜ ଇଚ୍ଛାରେ ଜେଲ୍ ଗଲେ, ସରକାର ସେତେବେଶି ହଇରାଣ ହେଲେ । ୧୯୪୦ ରୁ ଏହା ଆରମ୍ଭ ହେଲା । ରାଧାକୃଷ୍ଣ ବିଶ୍ୱାସରାୟ ବ୍ୟକ୍ତିଗତ ସତ୍ୟାଗ୍ରହ କରିବା ପାଇଁ କୋରାପୁଟର କଲେକ୍ଟର ଓ ଏସ୍. ପି.ଙ୍କୁ ଲେଖି ଜଣାଇ ଦେଲେ । କୋରାପୁଟ ଜିଲ୍ଲାର ପ୍ରାୟ ତିନିଶହ ଲୋକ ସତ୍ୟାଗ୍ରହରେ ଯୋଗଦେବା କଥା ମଧ ଜଣାଇଦେଲେ ।

୧୯୪୦ ଡିସେମ୍ବର ମାସ ଠାରୁ ୧୯୪୧ ମସିହା ମାର୍ଚ୍ଚ ମାସ ଭିତରେ କୋରାପୁଟ, ଜୟପୁର, ରାୟଗଡ଼ା ଓ ନବରଙ୍ଗପୁର ଜେଲ୍ ଭିତରେ ପ୍ରାୟ ଅଠରଶହ ସଂଗ୍ରାମୀ ଚାରି ମାସରୁ ୬ ମାସ ଜେଲ୍

ଦଣ୍ଡ ଭୋଗିଲେ । ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ କୋରାପୁଟରୁ, ସଦାଶିବ ତ୍ରିପାଠୀଙ୍କୁ ନବରଙ୍ଗପୁରରୁ ଓ ରାଧାମୋହନ ସାହୁଙ୍କୁ କୋଟପାଡ଼ର ଘଟର୍ଜା ଗାଁରୁ ଗିରଫ କରାଯାଇ କୋରାପୁଟ ଜେଲକୁ ପଠାଇ ଦିଆଗଲା । ସେଠୁ ନିଆଗଲା ବ୍ରହ୍ମପୁର ଜେଲ୍‌କୁ । ଏମାନେ ଆଠ ମାସରୁ ଦଶ ମାସ ଲେଖାଁଏ ଜେଲ୍ ଦଣ୍ଡ ଭୋଗିଲେ । ନବରଙ୍ଗପୁର ତାଲୁକାର ବହୁ କଂଗ୍ରେସକର୍ମୀ ଏଥିରେ ଭାଗ ନେଇଥିଲେ ।

## କୋରାପୁଟ ଜେଲ-ଯମପୁରୀ

ସତ୍ୟାଗ୍ରହ ଯୋଗୁଁ କୋରାପୁଟ ଜେଲ୍‌ରେ ବନ୍ଦୀ ସଂଖ୍ୟା ୮୫୦ ହୋଇଗଲା । ସେମାନଙ୍କୁ ନାନା ପ୍ରକାର କଷ୍ଟ ଦିଆଗଲା । ବଗଡ଼ା ଚାଉଳର ଗୋଡ଼ି ମିଶା ଭାତ, ପିତା ମାଣ୍ଡିଆ ଚୂନାର ରୁଟି, ଡାଲି ଓ ମୂଳା ଶାଗର ତରକାରୀ ଖାଇ ବହୁ ଲୋକ ରକ୍ତ ଝାଡ଼ା ରୋଗରେ ପଡ଼ିଲେ । ଶୀତରେ ଥରି, କାଛୁ କୁଣ୍ଡିଆ, ଘା ଘାଉଡ଼ ହୋଇ ନାହିଁ ନଥିବା କଷ୍ଟ ଭୋଗିଲେ । ରୋଗରେ ପଡ଼ିଲେ ଟୋପେ ଔଷଧ ମିଳୁ ନ ଥିଲା । ଏମିତି ରୋଗ ଭୋଗି ଜୟପୁରର ସଦାଶିବ ବେହେରା ଓ ଡମ୍ବରୁ ଡଳିଆ ସହିଦ ହୋଇଗଲେ । କୋରାପୁଟ ଜେଲ୍‌ରେ ପ୍ରାୟ ୫୦ଜଣ ବନ୍ଦୀ ମରିଗଲେ । ସେମାନଙ୍କ ଭିତରୁ ଅଧିକାଂଶ ଥିଲେ ଆଦିବାସୀ ।

## ଗୋରା ସରକାରଙ୍କୁ ଭାରତ ଛାଡ଼ ଡାକରା

ଘୋର ଯୁଦ୍ଧ ଲାଗିଥିଲା । ଜର୍ମାନୀ ଇଂଲଣ୍ଡକୁ ହଇରାଣ କରି ପକାଉ ଥାଏ । ଆମ ଦେଶର ବହୁତ ଲୋକ ଗୋରାମାନଙ୍କ ସପକ୍ଷରେ ଲଢ଼େଇ କରି ବିଦେଶ ମାଟିରେ ମଲେ । ଗାନ୍ଧି କହିଲେ, ''ଏଥର

ଇଂରେଜ ମାନେ ଏ ଦେଶ ଛାଡ଼ି ଯିବାର ବେଳ ଆସିଗଲା ।'' ସେ ସାରା ଦେଶର କଂଗ୍ରେସ ନେତାମାନଙ୍କୁ ଏକାଠି ହେବାକୁ କହିଲେ । ଦିନ ଠିକ ହେଲା – ୧୯୪୨ ଅଗଷ୍ଟ ମାସ ୮ ଓ ୯ ତାରିଖ । ସେଦିନ ସବୁ ନେତା ବମ୍ବେରେ ମିଶି କଣ କରିବାକୁ ହେବ ନିଷ୍ପତ୍ତି କରିବାକୁ ଠିକ୍ ହେଲା ।

ଖବର କାଗଜରେ ଏହା ପଢ଼ି ରାଧାକୃଷ୍ଣ ବିଶ୍ୱାସରାୟ କୋରାପୁଟ ଜିଲ୍ଲାର ସବୁ ନେତାମାନଙ୍କୁ ଜୟପୁର କଂଗ୍ରେସ ଅଫିସ୍‌କୁ ଡକାଇ ପଠାଇଲେ । ଆନ୍ଦୋଳନ ଚାଲୁ ରଖିବାକୁ ଶପଥ ପାଠ କରାଇଲେ । ସେ ୧୯୪୨ ଅଗଷ୍ଟ ୪ ତାରିଖ ଦିନ ବମ୍ବେ ଗଲେ ଗାନ୍ଧିଙ୍କୁ ଭେଟିବାକୁ । ସେଠାକୁ ଓଡ଼ିଶାର ପ୍ରାୟ ୫୦ ଜଣ ସରିକି ନେତା ଆସିଥାନ୍ତି । ସେମାନଙ୍କ ମଧ୍ୟରେ ମୁଖ୍ୟ ହେଲେ ପ୍ରାଣକୃଷ୍ଣ ପଢ଼ିହାରୀ, ହରେକୃଷ୍ଣ ମହତାବ, ରାଜକୃଷ୍ଣ ବୋଷ ଓ ନିରଞ୍ଜନ ପଟ୍ଟନାୟକ ଆଦି ।

୧୯୪୨ ଅଗଷ୍ଟ ୮ ତାରିଖ ବମ୍ବେ ସଭାରେ ଗାନ୍ଧିଜୀ ଘୋଷଣା କଲେ - ''ଆମେ ସ୍ୱାଧୀନ ହେବା ନଚେତ୍ ଦେଶ ପାଇଁ ଲଢ଼େଇ କରି ମରିବା ।'' ସେ କହିଲେ 'କର ଅବା ମର' । ଏହା ମନ୍ତ୍ର ଭଳି ଲୋକଙ୍କୁ କାଟୁ କଲା । ତା'ପରଦିନ ସକାଳେ ଗାନ୍ଧି, ନେହେରୁ ଓ ପଟେଲ ଆଦି ନେତାମାନେ ଗିରଫ ହେଲେ । ସରକାର କଂଗ୍ରେସ ଦଳକୁ ବେଆଇନ ଘୋଷଣା କଲେ ।

ରାଧାକୃଷ୍ଣ ବିଶ୍ୱାସରାୟ ୧୯୪୨ ଅଗଷ୍ଟ ୯ ତାରିଖରେ ଗାନ୍ଧିଜୀଙ୍କ ବାର୍ତ୍ତା ଧରି କୋରାପୁଟ ଫେରିଲେ ବମ୍ବେ ମେଲ୍‌ରେ । ସାଲୁରଠାରେ ତାଙ୍କୁ ଗିରଫ କରି କୋରାପୁଟ ଅଣାଗଲା । ତା' ଆଗରୁ

ସେ ବିଜୟନଗର-ନବରଙ୍ଗପୁର ବସ୍‌ର ଡ୍ରାଇଭରଙ୍କ ହାତରେ ସବୁ କାଗଜ ପତ୍ର ନବରଙ୍ଗପୁରର ଗୋପୀନାଥ ଦାସ ଓ କୁଳେନ୍ଦ୍ରୀର ବିଶ୍ୱନାଥ ପଟ୍ଟନାୟକଙ୍କ ପାଖକୁ ପଠାଇ ଦେଇଥିଲେ ।

ସେହିମାସ ୨୧ ତାରିଖରେ ସଦାଶିବ ତ୍ରିପାଠୀ ଓ ରାଧା ମୋହନ ସାହୁ ଗିରଫ ହେଲେ । ଲୋକମାନଙ୍କୁ ମତାଇବା ଓ ସରକାରଙ୍କ ବିରୋଧରେ ମେଳିକରିବା ଅଭିଯୋଗରେ ଏହି ତିନିଜଣଙ୍କୁ ବ୍ରହ୍ମପୁର କେନ୍ଦ୍ର ଜେଲ୍‌କୁ ପଠାଇ ଦିଆଗଲା । ସେତେବେଳେ ଗିଲ୍ ସାହେବ ଏସ୍. ପି. ଥିଲେ ।

**କୋରାପୁଟ ଜିଲ୍ଲାରେ ଆନ୍ଦୋଳନ**

ରାଧାକୃଷ୍ଣ ବିଶ୍ୱାସରାୟ ପଠାଇଥିବା ବାର୍ତ୍ତା ଗୋପୀନାଥ ଦାସ ଓ ବିଶ୍ୱନାଥ ପଟ୍ଟନାୟକ ପାଇଲେ । ନବରଙ୍ଗପୁରରେ ଲକ୍ଷ୍ମୀଚନ୍ଦ୍ର ଦାସଙ୍କ ନେତୃତ୍ୱରେ ମହମ୍ମଦବାଜୀଙ୍କ ଘର ମେର୍ଦ୍ଧା ଉପରେ ପେଟ୍ରୋମାକ୍ସ ଜାଳି ସାଇକ୍ଲୋଷ୍ଟାଇଲ ମେସିନରେ ହଜାର ହଜାର ପାମ୍ପଲେଟ୍ ଛପା ହେଲା । ଗାନ୍ଧିଜୀଙ୍କ ବାର୍ତ୍ତା ଓଡ଼ିଆରେ ଲେଖା ହେଲା ଏମିତି -

"ଗାନ୍ଧି ମହାତ୍ମାର ଡାକ । ସ୍ୱରାଜ ପାଇଁ ଲଢ଼େଇ କର । ନିଜକୁ ନିଜେ ନେତା ବୋଲି ଭାବ । ସରକାର ବୋଲି କେହି ନାହିଁ । ଇଚ୍ଛା ଅନୁସାରେ କାମ କର । ଟିକସ ମେଡ଼ି ଦିଅ, ସିସ୍ତ ମେଡ଼ି ଦିଅ । ଯୁଦ୍ଧକୁ ସାହାଯ୍ୟ କର ନାହିଁ । ଗୋରା ସରକାର ଭାରତଛାଡ଼ ।"

ଏହି କାଗଜ ସାରା ଜିଲ୍ଲାରେ ବଣ୍ଟା ହେଲା । ଜିଲ୍ଲା ସାରା ଆନ୍ଦୋଳନ ଆରମ୍ଭ ହୋଇଗଲା । ମାଲକାନଗିରିର ମାତିଲି ଥାନା ଘେରାଉ କଲେ ଗାନ୍ଧିବାଦୀ କର୍ମୀମାନେ ସେହି ବର୍ଷ ଅଗଷ୍ଟ ୨୧ରେ ।

ମାତିଲିଥାନା ତେନ୍ତୁଳିଗୁମ୍ମା ଗାଁର ଲକ୍ଷ୍ମଣ ନାୟକ ଏହାର ନେତା ଥିଲେ । ସେଦିନ ଶୁକ୍ରବାର । ମାତିଲି ହାଟ । ଚାରିଶହ କର୍ମୀ ଥାନା ଘେରାଉ କରି ଥାନା ଉପରେ କଂଗ୍ରେସ ପତାକା ଉଡ଼ାଇବା ବେଳେ ପୋଲିସ ଗୁଳି ଚଳାଇଲା ।




ଗୁଳିମାଡ଼ରେ ସମରା ବିଶି ନାୟକ, ନରସିଙ୍ଗ ନିତମ୍ୱ, ଅର୍ଜ୍ଜୁନ କୋଟିଆ ଓ ଲିଙ୍ଗା କୋଟିଆ ସହିଦ ହୋଇଗଲେ । ମାତିଲିର ମାଟି ଏହି ଦେଶପ୍ରେମୀଙ୍କ ରକ୍ତରେ ଲାଲ ହୋଇଗଲା । ଲକ୍ଷ୍ମଣ ନାୟକ ମାଡ଼ ଖାଇ ମୂର୍ଚ୍ଛା ହୋଇଗଲେ । ସେ ମରିଗଲେ ଭାବି ପାଖ ନାଳରେ ପୋଲିସ୍ ତାଙ୍କୁ ଫୋପାଡ଼ି ଦେଲା । ମାତିଲି ଗୁଳିକାଣ୍ଡ ସମୟରେ ରାମେୟା ନାମକ ଜଣେ ଗାର୍ଡ଼ ଆପୁ ଖାଇ ନିଶା ଅବସ୍ଥାରେ ମରିଗଲା ।

ଏଣେ ନବରଙ୍ଗପୁର ପାପଡ଼ାହାଣ୍ଡି ଟୁରୀ ନଈକୂଳରେ ପୋଲିସ୍ ଗୁଳିରେ ପ୍ରାୟ ୧୯ ଜଣ ସହିଦ ହେଲେ । ଶହେ ଆଠ ଜଣ ଖଣ୍ଡିଆ ଖାବରା ହେଲେ । ସାରା ଜିଲ୍ଲାରେ ହରିଡ଼ା ଓ ବାହାଡ଼ା ଗଛ କାଟି ରାସ୍ତା ବନ୍ଦ କରିଦେବା, କାଠ ପୋଲ ଉଡ଼ାଇ ଦେବା, ଟେଲିଫୋନ ଖୁଣ୍ଟ ଉପାଡ଼ି ଦେବା ଓ ଥାନା ଘେରାଉ କରିବା କାର୍ଯ୍ୟମାନ କରାଗଲା । କୋରାପୁଟ ଜିଲ୍ଲାର ସବୁ ନେତା ଗିରଫ ହୋଇ ଜେଲ୍ ଗଲେ । ଶହ ଶହ ଗାଁର ଲୋକମାନେ ଅତ୍ୟାଚାର ସହିଲେ ।

୧୯୪୨ ସେପ୍ଟେମ୍ବର ୨ ତାରିଖରେ ନିଜ ଘରୁ ଲକ୍ଷ୍ମଣନାୟକଙ୍କୁ ଗିରଫ କରାଗଲା । ରାମେୟା ଗାର୍ଡ଼ର ହତ୍ୟାକାରୀ ଭାବରେ କୋରାପୁଟ ଠାରେ ତାଙ୍କ ସହିତ ଆଉ ୫୪ ଜଣଙ୍କୁ ଗିରଫ କରି ବିଚାର ହେଲା । ନଭେମ୍ବର ୧୩ ରେ ଲକ୍ଷ୍ମଣ ନାୟକ ଫାଶୀ ପାଇବେ ବୋଲି ରାୟ ଦିଆଗଲା । ସେହି ମାସ ୧୬ ତାରିଖରେ ତାଙ୍କୁ କୋରାପୁଟ ଜେଲ୍‌ରୁ ବ୍ରହ୍ମପୁର ଜେଲ୍‌କୁ ରାତି ଅଧରେ ପଠାଇ ଦିଆଗଲା । କୋରାପୁଟ ଜେଲ୍‌ରେ ବିଶ୍ୱନାଥ ପଟ୍ଟନାୟକ, ମହମ୍ମଦ ବାଜୀ ଓ ସଦାନନ୍ଦ ମହାନ୍ତି ସେଦିନ ରାତି ନଅଟାରେ ଲକ୍ଷ୍ମଣ ନାୟକଙ୍କୁ ଦେଖା କରିଥିଲେ ।

**ବ୍ରହ୍ମପୁର ଜେଲ୍‌ରେ**

ଭାରତ ଛାଡ଼ ଆନ୍ଦୋଳନ ସମୟରେ ଓଡ଼ିଶାର ବଡ଼ ବଡ଼ ନେତା ମାନଙ୍କୁ ବ୍ରହ୍ମପୁର ଜେଲ୍‌ରେ ରଖାଯାଇଥିଲା । ସେମାନଙ୍କ ମଧ୍ୟରେ ଥିଲେ ଗୋପବନ୍ଧୁ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ପ୍ରାଣକୃଷ୍ଣ ପଢ଼ିହାରୀ, ରାଜକୃଷ୍ଣ ବୋଷ, ବୀରେନ ମିତ୍ର, ଅପର୍ଣ୍ଣା ପାତ୍ର, ଆଚାର୍ଯ୍ୟ

ହରିହର, ବିଶ୍ୱନାଥ ଦାସ, ନବକୃଷ୍ଣ ଚୌଧୁରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ରାଧାନାଥ ରଥ, ରବିନ୍ଦ୍ର ମୋହନ ଦାସ ଓ ଉମା ଚରଣ ପଟ୍ଟନାୟକ ଆଦି । ରାଧାକୃଷ୍ଣ ବିଶ୍ୱାସରାୟ, ସଦାଶିବ ତ୍ରିପାଠୀ ଓ ରାଧାମୋହନ ସାହୁ ମଧ୍ୟ ୧୯୪୨ରେ ଏହି ବ୍ରହ୍ମପୁର ଜେଲ୍‌ରେ ଥିଲେ ।

ଲକ୍ଷ୍ମଣ ନାୟକଙ୍କ ଫାଶୀ ପାଇବାର ପୂର୍ବଦିନ ରାତିରେ ଫାଶୀ କଥା ଶୁଣି ରାଧାକୃଷ୍ଣ ବିଶ୍ୱାସରାୟ ଦୁଃଖରେ କାନ୍ଦି ପକାଇଲେ । ତାଙ୍କ ଆଖି ଆଗରେ ତାଙ୍କର ଅତିସ୍ନେହୀ ଲୋକ ଫାଶୀ ପାଇବ, ଏହା ଭାବି ସେ କଇଁ କଇଁ ହୋଇ କାନ୍ଦିଲେ । ରାଧାମୋହନ ସାହୁ ତାଙ୍କୁ ବୁଝାଇଲେ ବି ତାଙ୍କ ଆଖିରୁ ଲୁହ ବନ୍ଦ ହେଲା ନାହିଁ । ସେ ଚେତା ହରାଇ ପଡ଼ିଗଲେ ।

ସେଦିନ ରାତିରେ ସଦାଶିବ ତ୍ରିପାଠୀ ଲକ୍ଷ୍ମଣ ନାୟକଙ୍କୁ ଭେଟି ଥିଲେ । ଲକ୍ଷ୍ମଣ ନାୟକ ତାଙ୍କୁ ଜୁହାର ହେଲେ । ଶୂନ୍‌ଶାନ୍ ରାତି । ସବୁଆଡ଼େ ନୀରବତାର ରାଜୁତି । ଏତିକିବେଳେ ୧୪ ନମ୍ବର କୋଠରିରେ ଲକ୍ଷ୍ମଣ ନାୟକ ସଦାଶିବ ବାବୁଙ୍କୁ ଧୀରଗଳାରେ କହିଲେ- ‘‘ଗୋଟେକ୍ କଥା ଆଜ୍ଞା ! ଆମେମନ ଯେନ ସ୍ୱରାଜକାଜେ ଲାଗଲୁଆଛୁ ହାଇଟା ଦେଖି ନାଇଁ ପାରି, ହେତ୍‌କି ମୋର ଦୁଃଖ । ଜୀବ୍‌ନେ ଇ ଅଭାବ ହେଲା ।’’ (ଗୋଟେ କଥା ଆଜ୍ଞା । ଆମେମାନେ ଯେଉଁ ସ୍ୱରାଜ୍ୟ ପାଇଁ ଲାଗିଛେ ତାକୁ ଦେଖି ପାରିବି ନାହିଁ, ଏହା ମୋର ଦୁଃଖ । ଜୀବନରେ ଏହି ଅଭାବ ରହିଗଲା) ଶେଷରେ ‘‘ମୋ ପୁଅ ଝିଅ ଆପଣଙ୍କୁ ଲାଗିଲା’’ କହି ସେ ଚୁପ୍ ହୋଇ ଗଲେ ।

୧୯୪୩ ମାର୍ଚ୍ଚ ୨୯ ତାରିଖ । ସକାଳ ୫ଟାରେ ବ୍ରହ୍ମପୁର ଜେଲ୍ ଭିତରେ ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦିଆଗଲା । ଦେଶପାଇଁ ଜୀବନ ଦେଇ ସେ ସହିଦ ପାଲଟିଗଲେ ।

ସାରା ଜେଲ୍ ନୀରବ ହୋଇଗଲା ଏହା ଶୁଣି । ରାଧାକୃଷ୍ଣ ବିଶ୍ୱାସରାୟ, ସଦାଶିବ ତ୍ରିପାଠୀ ଓ ରାଧାମୋହନ ସାହୁ ଯେମିତି ପଥର ପାଲଟିଗଲେ ସେଦିନ ।

**ଯୁଦ୍ଧ ସରିଲା**

ଜର୍ମାନୀ ଯୁଦ୍ଧରେ ହାରିଗଲା । ତଳି ତଳାନ୍ତ ହୋଇଗଲା । ଇଂରେଜମାନେ ୧୯୪୫ ମସିହାରେ ଭାରତକୁ ସ୍ୱାଧୀନତା ଦେବାକୁ ଇଚ୍ଛା କଲେ । ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଅଟଲୀ ମହାରାଣୀ ଭିକ୍ଟୋରିଆଙ୍କ ପଣନାତି ମାଉଣ୍ଟବାଟେନଙ୍କୁ ଭାରତକୁ ବଡ଼ଲାଟ କରି ପଠାଇଲେ । ଜେଲ୍ ଭିତରେ ଥିବା ସବୁ ନେତାଙ୍କୁ ଖଲାସ କରି ଦିଆଗଲା । ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀ ବ୍ରହ୍ମପୁର ଜେଲରୁ ଏବଂ ଲକ୍ଷ୍ମୀଚନ୍ଦ୍ର ଦାସ, ସଦାନନ୍ଦ ମହାନ୍ତି ଓ ମହମ୍ମଦ ବାଜୀ ଆଦି କୋରାପୁଟ ଜେଲ୍ରୁ ମୁକୁଳିଲେ । ୧୯୪୭ ଅଗଷ୍ଟ ମାସ ୧୫ ତାରିଖ ଦିନ ଆମ ଦେଶ ସ୍ୱାଧୀନ ହେଲା ।

ରାଧାକୃଷ୍ଣ ବିଶ୍ୱାସରାୟ କୋରାପୁଟ ଠାରେ ତ୍ରିରଙ୍ଗା ପତାକା ଉଡ଼ାଇ ଦେଶକୁ ସ୍ୱାଧୀନ କରିଥିବା ସଂଗ୍ରାମୀ ମାନଙ୍କ ନାମ ମନେ ପକାଇଲେ । ସ୍ୱାଧୀନ ଦେଶର ନାଗରିକ ଭାବେ ସମସ୍ତେ ଆନନ୍ଦ ଅନୁଭବ କରିବା ସହ ସଂଗ୍ରାମୀ ସହିଦମାନଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ପ୍ରଣତି ଜଣାଇଲେ ।

## ଓଡ଼ିଶାରେ କଂଗ୍ରେସ ସରକାର ଗଢ଼ିଲା

୧୯୪୫ରେ ଯୁଦ୍ଧ ଚାଲିଥିଲା ବେଳେ ଓଡ଼ିଶାରେ ଭୋଟ ହୋଇ କଂଗ୍ରେସଦଳ ସରକାର ଗଢ଼ିଲା । କୋରାପୁଟ ବିଧାନସଭା ମଣ୍ଡଳରୁ ଜଣେ ଆନ୍ଧ୍ରବାସୀ ସ୍ୱାଧୀନ ପ୍ରାର୍ଥୀଭାବରେ ଛିଡ଼ା ହୋଇଥିଲେ । ଆନ୍ଧ୍ର ମହାସଭା ଏହି ପ୍ରାର୍ଥୀଙ୍କୁ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ବିରୋଧରେ ଛିଡ଼ା କରାଇ ଥିଲେ । ହେଲେ ରାଧାକୃଷ୍ଣ ବିଶ୍ୱାସରାୟ ନିଜ ଲୋକପ୍ରିୟତା ଯୋଗୁଁ ବହୁ ଭୋଟରେ ଜିଣିଲେ ।

ସେ ଓଡ଼ିଶା ମନ୍ତ୍ରିମଣ୍ଡଳରେ ଜଣେ ମନ୍ତ୍ରୀ ହୋଇ କୋରାପୁଟ ଜିଲ୍ଲାର ଆଦିବାସୀ ଓ ହରିଜନ ମାନଙ୍କ ଉନ୍ନତି ପାଇଁ ବହୁକାର୍ଯ୍ୟ କରିଥିଲେ । କୋରାପୁଟର ଯେଉଁ କଂଗ୍ରେସ କର୍ମୀମାନେ ବିଶେଷତଃ ଆଦିବାସୀ ଓ ହରିଜନ ଥିଲେ, ସେମାନଙ୍କୁ ଥଇଥାନ କରିବା ପାଇଁ ବିଶ୍ୱାସରାୟ ଆଦିବାସୀ ଓ ହରିଜନ କଲ୍ୟାଣ ମନ୍ତ୍ରୀଭାବେ ବହୁ ଆଶ୍ରମ-ସ୍କୁଲ ଖୋଲିଥିଲେ । ସେମାନଙ୍କୁ ସେବାଶ୍ରମରେ ସେବକ ଭାବେ ନିଯୁକ୍ତି ଦେଇଥିଲେ । ଆଦିବାସୀ ଓ ହରିଜନ ପିଲା କିମିତ ଦି' ଅକ୍ଷର ପାଠ ପଢ଼ିବେ ସବୁବେଳେ ସେ ସେଇକଥା ଚିନ୍ତା କରୁଥିଲେ ।

ରାଧାକୃଷ୍ଣ ବିଶ୍ୱାସରାୟ ଯେତିକି ସଚ୍ଚୋଟ ଥିଲେ ସେତିକି ସ୍ୱାଭିମାନୀ ଥିଲେ । କାହାର ଅନ୍ୟାୟ କଥା ଶୁଣିବା ବା କରିବା ଯେପରି ତାଙ୍କ ଜାତକରେ ନଥିଲା । ସେ କେବେହେଲେ କ୍ଷମତା ଲୋଭୀ ନଥିଲେ । ତାଙ୍କ ପାଖ ଲୋକେ କହନ୍ତି ଯେ, ସେ ଅନ୍ୟାୟ ଦେଖିଲେ ରାଗି ଲାଲ ପଡ଼ି ଯାଉଥିଲେ ।

୧୯୫୧ ମସିହା ଭୋଟରେ ଉମରକୋଟରୁ ଗଣତନ୍ତ୍ର ପରିଷଦର ପ୍ରାର୍ଥୀ ଏ. ଆର୍. ଖାନ୍‌ଙ୍କୁ ପରାସ୍ତ କରି ସେ ଏମ.ଏଲ.ଏ.

ହେଲେ । କିନ୍ତୁ ଶ୍ରୀ ଖାନ୍ ତାଙ୍କ ବିଁରୁଦ୍ଧରେ କଟକ ହାଇକୋର୍ଟରେ ନିର୍ବାଚନ ମକଦ୍ଦମା କରିଥିଲେ । ଏହି ମକଦ୍ଦମା ବିଚାର ବେଳେ ରାଧାକୃଷ୍ଣ ଶ୍ରୀ ଖାନ୍ଙ୍କ ନାମରେ ଗୀତ ଲେଖିଥିବା ସ୍ୱୀକାର କରିଥିଲେ ।

ନିର୍ବାଚନ ମକଦ୍ଦମାରେ ହାରି ତାଙ୍କୁ ଏମ୍.ଏଲ.ଏ. ପଦ ଛାଡ଼ିବାକୁ ପଡ଼ିଥିଲା । ସେ ୧୯୫୩ ଯାଏ ଏମ.ଏଲ.ଏ. ଥାଇ କୋରାପୁଟ ଜିଲ୍ଲାର ରାସ୍ତାଘାଟ ଓ ବିଦ୍ୟାଳୟ ନିର୍ମାଣ ନିମନ୍ତେ ଦୃଷ୍ଟି ଦେଇଥିଲେ । ଲୋକ ହିସାବରେ ସେ ଯେପରି ସଚ୍ଚୋଟ ଥିଲେ ସେହିପରି ଅତି ସରଳ ଜୀବନ ମଧ୍ୟ ଯାପନ କରୁଥିଲେ ।

ସେ ୧୯୫୪ରୁ୫୭ ଯାଏ ରାଜ୍ୟ ସଭାକୁ ମନୋନୀତ ହୋଇଥିଲେ । ଦିଲ୍ଲୀରେ ରହି ଦେଶ ଶାସନରେ ଅଂଶ ଗ୍ରହଣ କରିଥିଲେ ।

**ଭୂଦାନ ଆନ୍ଦୋଳନ**

ମହାତ୍ମା ବିନୋବା ଭାବେ ୧୯୫୪-୫୫ରେ ଅମୃତଲାଲ ଠାକର, ସିଦ୍ଧରାଜ ଧଡ଼ା, ମିତ୍ତଲଜୀ, ଆନା ସାହେବ ସହସ୍ର ବୁଦ୍ଧେ, ଆଚାର୍ଯ୍ୟ ହରିହର, ମା ରମାଦେବୀ, ରତନ ଦାସ ଓ ବହୁ ଭୂଦାନ କର୍ମୀଙ୍କ ସହିତ ନୂଆପୁଟ ଗ୍ରାମକୁ ଆସିଥିଲେ । ରାଧାକୃଷ୍ଣ ବିଶ୍ୱାସରାୟ ଲତାବେଡ଼ା ଗ୍ରାମରେ ଥିବା ନିଜର ତିନି ଏକର ଜମି, ଗୋଟେ ବଳଦ ଓ ପାଞ୍ଚପୁଟି ଧାନ ଭୂଦାନକୁ ଦାନ ଦେଇଥିଲେ । ସେମାନଙ୍କ ସହ କୋରାପୁଟ ଜିଲ୍ଲାର ବହୁ ସ୍ଥାନକୁ ସେ ପଦଯାତ୍ରାରେ ଯାଇଥିଲେ । ତାଙ୍କ ପ୍ରେରଣା ଓ ସହଯୋଗରେ କୋରାପୁଟ ଜିଲ୍ଲାରେ ଭୂଦାନ ଆନ୍ଦୋଳନ ସଫଳ ହୋଇଥିଲା ।

୧୯୫୭ରୁ ସେ ସକ୍ରିୟ ରାଜନୀତିରୁ ଓହରି ଗଲେ । କେବଳ ଜୟପୁର ସହରରେ ରହି ଗାଁ ଗହଳରେ ଥିବା ଲୋକମାନଙ୍କ ହାରି ଗୁହାରି ଶୁଣି, ଯେତିକି ପାରୁଥିଲେ ସେତିକି ସାହାଯ୍ୟ କରୁଥିଲେ ।

**ତାଙ୍କ ପରିବାର**

ରାଧାକୃଷ୍ଣ ବିଶ୍ୱାସରାୟଙ୍କ ପ୍ରଥମ ସ୍ତ୍ରୀ ଥିଲେ ରୂପାମଣି । ଅଳ୍ପ ବୟସରେ ସେ ମରି ଗଲେ । ଏଣୁ ସେ କୌତୁକଙ୍କୁ ବିବାହ କରିଥିଲେ । ତାଙ୍କର ଦୁଇ ପୁଅ । ବଡ଼ପୁଅ ରାମଚନ୍ଦ୍ର ଓ ସାନପୁଅ ବାଞ୍ଛାନିଧି । ତାଙ୍କ ବଡ଼ପୁଅର ପୁଅ ବାଲାଜୀ ଓ ଦୁଇ ଝିଅ ଥିଲେ । ଜୀବିତ କାଳ ମଧ୍ୟରେ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ପାରିବାରିକ ଓ ସାମାଜିକ ଜୀବନ ଅତି ସୁଖକର ଥିଲା । ସେ ମେଳାପୀ ଓ ବନ୍ଧୁପ୍ରିୟ ଥିଲେ । ସରଳ ଜୀବନ ଯାପନ ଓ ଦେଶ କାମ ତାଙ୍କର ମୁଖ୍ୟ ଚିନ୍ତା ଥିଲା ।

୧୯୮୪ ଫେବୃୟାରୀ ୫ ତାରିଖ ଦିନ ୮୦ ବର୍ଷ ବୟସରେ ମାସେ କାଳ ଶଯ୍ୟାଶାୟୀ ହେବା ପରେ ସେ ମୃତ୍ୟୁବରଣ କଲେ । ଜଣେ ନିରଳସ ଆଜୀବନ କର୍ମୀ, ସ୍ୱାଧୀନତା ସଂଗ୍ରାମୀ ଓ ଉତ୍ତମ ସଂଗଠକଙ୍କୁ ଦେଶ ସବୁଦିନ ପାଇଁ ହରାଇଲା ।

କାମ, ସେବା, ତ୍ୟାଗ ଓ ମଣିଷ ପ୍ରୀତିକୁ ନେଇ ରାଧାକୃଷ୍ଣ ବିଶ୍ୱାସରାୟ ପରିଚିତ ହୋଇଗଲେ କୋରାପୁଟର ଗାନ୍ଧିଭାବେ । ସେ ଥିଲେ ମହତ ସଂଗ୍ରାମୀ ପୁରୁଷଟିଏ । ସତେ ଯେମିତି ସେଥିଲେ ଆଲୁଅର ଧାରାଟିଏ, ଯିଏ ସାଧାରଣ ଜନତାକୁ ଅନ୍ଧାରରେ ବାଟ ଦେଖାଉଥିଲେ ।

***